# ମନୁଷ୍ୟ ତା ଭାଗ୍ୟ ନିଜେ ଗଢ଼େ

ବହୁ ପୂର୍ବକାଳରେ ବ୍ରହ୍ମଦେଶର ଏକ ପାହାଡ଼ିଆ ଅଞ୍ଚଳରେ ଜଣେ ରାଜା ଥିଲେ । ନିଜର ପ୍ରଶଂସା ଶୁଣିବାକୁ ସେ ଖୁବ୍ ଭଲ ପାଉଥିଲେ । ଥରେ ଗୋଟିଏ ଯୁଦ୍ଧରେ ତାଙ୍କର ଜୟ ହେବାରୁ ସେ ତିନି ଦିନ ରାଜଧାନୀରେ ଆନନ୍ଦ ଉତ୍ସବ କରାଇଲେ । ନାଚତାମସା ଓ ଭୋଜିଭାତରେ ରାଜନଅର ପଡ଼ିଲା ଉଠିଲା । ରାଣୀମାନଙ୍କୁ ଓ ନିଜର ସାତ ଝିଅଙ୍କୁ ପାଖରେ ବସାଇ ରାଜା ନିତି ନାଚତାମସା ଦେଖୁଥିଲେ । ଉତ୍ସବ ଶେଷରେ ସେମାନଙ୍କୁ ପଚାରିଲେ, "ଏ ନାଚତାମସା ତୁମକୁ କେମିତି ଲାଗିଲା ?" ଖୁବ୍ ବଢ଼ିଆ ହେଲା ବୋଲି ସମସ୍ତେ କହିଲେ । ରାଜା ତାପରେ ଝିଅମାନଙ୍କୁ ପୁଣି କହିଲେ, "ତୁମପରି ଭାଗ୍ୟବନ୍ତ କିଏ ଅଛି ? ତୁମେ କେତେ ବଡ଼ ରାଜାର ଝିଅ ! ମନଇଚ୍ଛା ଏଥର ମଉଜ ମଜଲିସ୍ କର ।" ଏହା ଶୁଣି ବଡ଼ ଝିଅ କହିଲା, "ସତ କଥା ତ । ଆମ ଭାଗ୍ୟ ଆପଣଙ୍କ ଭାଗ୍ୟ ସଙ୍ଗେ ଗୁନ୍ଥା । ଆମର ଦୁଃଖ କଣ ? ଭୟ କଣ ?"

ସାନ ଝିଅ ଛନ୍ଦ କପଟ ଜାଣି ନ ଥିଲା କି ଖୁସାମତ କରି ଜାଣି ନ ଥିଲା । ସେ ସଫା କଥା କହିଦିଏ । ସେଥିପାଇଁ ତାକୁ ବାପ କି ଭଉଣୀମାନେ ଭଲ ପାଉ ନ ଥିଲେ । ସେ ବଡ଼ ଭଉଣୀକୁ ପୁଣି କହିଲା, "ତୁମେ ସିନା ବାପାଙ୍କ ଭାଗ୍ୟ ଉପରେ ନିର୍ଭର କଲ, କିନ୍ତୁ ମୋ ଭାଗ୍ୟ ମୋ ହାତରେ । ମୋ କର୍ମଫଳ ମତେ ହିଁ ଭୋଗିବାକୁ ହେବ ।"

ରାଜା ସାନ ଝିଅର କଥା ଶୁଣି ରାଗି ଉଠିଲେ । "ସବୁଠୁଁ ସାନ ହୋଇ ତାର ତ କମ୍ ସାହସ ନୁହେଁ ? କହୁଛି କଣନା 'ମୋ ଭାଗ୍ୟ ମୋ ହାତରେ !' ଆଚ୍ଛା, ଦେଖିବା କାହା ଭାଗ୍ୟ କାହା ହାତରେ ।"

ରାଜା ସାନ ଝିଅକୁ କିପରି ଉଚିତ ଶିକ୍ଷା ଦେବେ ଅନେକ ବେଳଯାଏ ଚିନ୍ତା କଲେ । ଶେଷରେ ପ୍ରଧାନମନ୍ତ୍ରୀଙ୍କୁ ଡକାଇ କହିଲେ, "ରାଜ୍ୟର ସବୁଠାରୁ ଦରିଦ୍ର ଲୋକକୁ ଖୋଜି ମୋ ପାଖକୁ ଡାକି ଆଣ ।"

ରାଜାଙ୍କ ଆଦେଶରେ ମନ୍ତ୍ରୀ ଗୁପ୍ତଚରଙ୍କୁ ଲୋକ ପଠାଇ ଖୋଜାଖୋଜି କଲେ । ଯେଉଁ କେତେଜଣ ଗରିବ ଲୋକ ମିଳିଲେ, ରାଜାଙ୍କ ମନକୁ ପାଇଲା ନାହିଁ । କାହାର ଜମିବାଡ଼ି ନ ଥିଲେ ମଧ୍ୟ ହାତରେ କିଛି ଟଙ୍କା ପଇସା ଥିଲା, କାହାର ବା ଧନୀ ବନ୍ଧୁବାନ୍ଧବ ଥିଲେ । ସବାଶେଷରେ ପ୍ରଧାନ ମନ୍ତ୍ରୀ ଜଣେ ଲୋକକୁ ଆଣି ରାଜାଙ୍କ ଆଗରେ ଠିଆ କରାଇ କହିଲେ, "ମହାରାଜ ! ଏଇ ଲୋକ ହିଁ ସବୁଠାରୁ ଦରିଦ୍ର । ପ୍ରତିଦିନ ବଣରୁ କାଠ କାଟି ବଜାରରେ ବିକ୍ରି କରି ଚଳେ । ଭଲ ଲୁଗାଟି ବି ଖଣ୍ଡେ କିଣିପାରୁନାହିଁ । ଘରେ ତାର ଏକମାତ୍ର ବୁଢ଼ୀ ମା କଡ଼ଘରେ ଚଢ଼ିଛି ।"

ରାଜା ସେ ଲୋକର ବେଶଭୂଷା ଦେଖି ମନ୍ତ୍ରୀଙ୍କ କଥାକୁ ବିଶ୍ୱାସ କଲେ । ପ୍ୟାଣ୍ଟ ଓ କୁର୍ତ୍ତା ଠାଆକୁ ଠାଆ ଚିରା । ସେ ସବୁଠାରୁ ଗରିବ ବୋଲି ତାଙ୍କର ହୃଦ୍‌ବୋଧ ହେଲା । ତାପରେ ସେ ତାଙ୍କ ସାନ ଝିଅକୁ ଡକାଇ ଆଣି ତାର ଦାମିକା ପୋଷାକ ଓ ଅଳଙ୍କାର ସବୁ କାଢ଼ି ରଖିଲେ ଏବଂ ସେଇ କାଠୁରିଆ ସାଙ୍ଗରେ ତାକୁ ବାହା କରାଇ ଦେଇ ନଅରରୁ ବିଦା କରିଦେଲେ ।



ରାଜାଙ୍କ ପ୍ରକୃତ ସମସ୍ତଙ୍କୁ ଜଣା ଥିଲା । ତାଙ୍କୁ ବାଧା ଦେବାକୁ କେହି ସାହସ କଲେ ନାହିଁ । କେବଳ ରାଣୀ ମା ଲୁହ ଛଳ ଛଳ ଆଖିରେ ଝିଅର ରତ୍ନମୁଦିଟି ଆଣି ଲୁଚେଇ କରି ତା ଅଣ୍ଟାରେ ଗୁଞ୍ଜି ଦେଇଗଲେ ।

ଯେଉଁ ଦରିଦ୍ର କାଠୁରିଆକୁ ରାଜାଝିଅ ବିଭା ହେଲା, ତା ନାଁ ଆଇଦୁ କାଠା । ବଣର ଶବର ବସ୍ତିରେ ତା ଘର । ଗୋଟିଏ ବାଉଁଶ ଖୁଣ୍ଟରେ ଡେରି ତାଳପତ୍ର ଛପର କୁଡ଼ିଆ । ଭିତରେ ମଣିଣାଖଣ୍ଡେ ବି ନ ଥିଲା । ମାଆ ଦେଇଥିବା ମୁଦିଟି ସ୍ୱାମୀଙ୍କୁ ଦେଇ ରଜାଝିଅ କହିଲା "ଏଇଟି ବିକି କରି ଲୁଗାପଟା ଓ ଖାଦ୍ୟ ଜିନିଷ କିଛି ଆଣ ।" ସେ ମୁଦିରେ ଖଣ୍ଡେ ବହୁମୂଲ୍ୟ ପଦ୍ମରାଗ ମଣି ଖଞ୍ଜା ଯାଇଥିଲା । କିନ୍ତୁ ଘୁଷୁରି ଯେପରି ପାଚିଲା କଦଳୀର ମୂଲ୍ୟ ବୁଝେ ନାହିଁ, ଆଇଦୁ ସେହିପରି ମଣିକୁ ଦେଖି କହିଲା, "ଏ ନାଲିଆ ପଥର ଖଣ୍ଡକ ନେଇ କିଏ ବା ମତେ ଜିନିଷ ଦେବ ?" ସତ କଥା । ସେ ଯେତେ ଲୋକଙ୍କୁ ନେଇ ମୁଦି ଦେଖାଇଲା, କେହି ତାକୁ ନେଲେ ନାହିଁ । ଓଲଟି ଥଟ୍ଟା କଲେ । ତେଣୁ ସେ ମୁଦିଟାକୁ ବଣରେ ଫିଙ୍ଗି ଦେଇ ଘରକୁ ଆସି ତା ସ୍ତ୍ରୀକୁ କହିଲା, "ବୃଥାରେ ମତେ ସମସ୍ତଙ୍କ ପାଖରେ ଲୋକହସା କରାଇଲ ।"

ରଜାଝିଅ ମୁଣ୍ଡରେ ହାତ ଦେଇ କହିଲା, "କଣ କଲ ତୁମେ ? ରତ୍ନମୁଦିଟାକୁ ଫୋପାଡ଼ି ଦେଲ ? ସହରକୁ ନେଇଥିଲେ ସେଇ ମୁଦି ବଦଳରେ ବହୁତ ଟଙ୍କା ପାଇଥାନ୍ତ ଏବଂ ସବୁ-ଦିନପାଇଁ ଆମର ଦୁଃଖ ଯାଇଥାନ୍ତା ।"

ଆଇଦୁ କାଠା ଟିକିଏ ଚିନ୍ତା କରି କହିଲା, "ସତ କହୁଛ ତୁମେ ? ତାହା ହେଲେ ସେଇଭଳି ଲାଲ ପଥର ମୁଁ ତ ବହୁତ ଦେଖିଛି । ମୁଁ ଯେଉଁଠୁ କାଠ ଆଣେ, ସେଇ ନଈବାଲିରେ ଗଦା ହୋଇଛି ସେଗୁଡ଼ାକ ।" ରଜା ଝିଅ ଏ କଥା ଶୁଣି ଆଶ୍ଚର୍ଯ୍ୟ ହୋଇଗଲା । ପଦ୍ମରାଗ ମଣି ଗଦା ହୋଇଛି ! ନିଜେ ନ ଦେଖିଲେ ସେ ବିଶ୍ୱାସ କରିବ କେମିତି ? ସ୍ୱାମୀକୁ କହିଲା, "କାଲି ଯେତେବେଳେ ତୁମେ ବଣକୁ ଯିବ, ମତେ ଟିକିଏ ସାଙ୍ଗରେ ନେଇଯିବ । ମୁଁ ଦେଖିବି ସେ କି ପ୍ରକାର ପଥର । କିନ୍ତୁ ଏ ବିଷୟ କାହାକୁ କହିବ ନାହିଁ ।"

ତା ପରଦିନ ସକାଳେ ବଡ଼ି ଭୋରରୁ ଉଠି ସ୍ୱାମୀ ଓ ସ୍ତ୍ରୀ ସାଙ୍ଗ ହୋଇ ବଣକୁ ଗଲେ । କିଛି ବାଟ ଯାଇ ଏକ ପାହାଡ଼ିଆ ନଈକୂଳରେ ଆଇଦୁ ଠିଆହେଲା ।



କି ଅଦ୍ଭୁତ ଦୃଶ୍ୟ ! ସତକୁ ସତ, ଲାଲ ପଦ୍ମରାଗ ମଣି କେତେ ଯେ ନଈ ବାଲିରେ ପଡ଼ିଛି ତାର ସୀମା ନାହିଁ । ଦୁଇଜଣ ଯେତେ ପାରିଲେ ସେହି ପଥର ଗୋଟେଇଲେ ଏବଂ ପିନ୍ଧା କାନିରେ ତାକୁ ବାନ୍ଧି ଘରକୁ ଆସିଲେ । ଅଗଣାରେ ଗାତ ଖୋଳି ରାଜକନ୍ୟା ସେଗୁଡ଼ିକୁ ଯତ୍ନରେ ପୋତିଦେଲା । ବାଛି ବାଛି ସେଥିରୁ ମୁଠାଏ ମଣି ସ୍ୱାମୀ ହାତରେ ଦେଇ କହିଲା, "ଏହାକୁ ନେଇ ରାଜାଙ୍କୁ ଦେଇଆସ ।"

ରାଜା ସେ ମଣି ପାଇ ଖୁସି ହେବେ କଣ, ରାଗରେ ଜଳିଉଠିଲେ । ପ୍ରଧାନ ମନ୍ତ୍ରୀଙ୍କୁ ଡକାଇ ଆଣି କହିଲେ, "ତୁମେ ଗୋଟାଏ ଧପ୍ପାବାଜ । ମୁଁ କହିଥିଲି ଜଣେ ଦରିଦ୍ର ଲୋକସଙ୍ଗେ ଝିଅକୁ ବିଭା ଦେବି ବୋଲି । କିନ୍ତୁ ତୁମେ ଏପରି ଲୋକ ବାଛିଲ ଯେ କି ବିଭା ବାସିଦିନ କୋଟି କୋଟି ଟଙ୍କା ମୂଲ୍ୟର ମୁଠାଏ ମଣି ଆଣି ମତେ ଉପହାର ଦେଉଛି !"

"ମୁଁ ଆପଣଙ୍କୁ ଠକିନାହିଁ, ହଜୁର । ସମସ୍ତେ ଜାଣନ୍ତି ଆଇଦୁ କାଠାପରି ଦରିଦ୍ର ଏ ରାଜ୍ୟରେ ଆଉ କେହି ନାହିଁ । ବୋଧହୁଏ କୌଣସି ଦେବତା ତାକୁ ସାହାଯ୍ୟ କରିଛନ୍ତି ।" କିନ୍ତୁ ମନ୍ତ୍ରୀ ଯେତେ ଯାହା କହିଲେ, ରାଜା କିଛି ବୁଝିଲେ ନାହିଁ ।

ଓଲଟି ହୁକୁମ ଦେଲେ, "ଏଇ ମୁହୂର୍ତ୍ତରୁ ମନ୍ତ୍ରୀର ଘରବାର, ଜମିବାଡ଼ ସବୁ କାଢ଼ି ନିଆଯିବ ।" ମନ୍ତ୍ରୀ ବିଚରା ଭୂମି ହୋଇ ସେ ଅଞ୍ଚଳରୁ ରାଜା ପାଖରୁ ଖସି ପଳାଇଗଲା । ଆଉ କିଛି କହିଥିଲେ ତାର ମୁଣ୍ଡକାଟ ହୋଇଥାନ୍ତା ।

ଠିକ୍ ପରଦିନ ଗୋଟାଏ ସୁନେଲି ହରିଣ କୁଆଡ଼ୁ ଆସି ରାଜାଙ୍କ ବଗିଚାରେ ପଶି ବହୁତ ଫୁଲଗଛ ନଷ୍ଟ କଲା । ଜଗୁଆଳମାନେ ଯେତେ ଚେଷ୍ଟା କଲେ, ତାକୁ ଧରି ପାରିଲେ ନାହିଁ । ରାଜା ଏହା ଶୁଣି ବ୍ୟସ୍ତ ହୋଇପଡ଼ିଲେ ଏବଂ କହିଲେ, "ରାଜ୍ୟର ସବୁ ଘୋଡ଼ା ଚଢ଼ାଳିଙ୍କୁ କାଲି ଡକାଅ । ସେ ହରିଣକୁ ଖୋଜିବା । ମୁଁ ବି ନିଜେ ଶିକାରରେ ଯୋଗ ଦେବି । ଗୋଟାଏ ହରିଣଟାକୁ ଆମେ ଧରିପାରିବା ନାହିଁ ?"

ଜାତିରେ ଶବର ହେଲେ କଣ ହେବ, ଆଇଦୁ ଜଣେ ଭଲ ଘୋଡ଼ସବାର । ମାଗି ଯାଚି ସେ ଘୋଡ଼ାଚଢ଼ା ଶିଖିଥିଲା । ଥରେ ଗୋଟାଏ ଘୋଡ଼ାଦୌଡ଼ରେ ଜିଣି ସେ ପୁରସ୍କାର ପାଇଥିଲା । ତେଣୁ ହରିଣ ଶିକାର ପାଇଁ ତାକୁ ମଧ୍ୟ ବଛାଗଲା । ସେ ରାଜାଙ୍କ ଘୋଡ଼ାଶାଳକୁ ଯାଇ ରକ୍ଷକକୁ କହିଲା, "ମୋର ଘୋଡ଼ା ନାହିଁ । ମତେ ଭଲ ଘୋଡ଼ାଟିଏ ଆଜିକ ପାଇଁ ଦିଅନ୍ତୁ ।" ରକ୍ଷକ ତାକୁ ଆଗରୁ ଜାଣିଥିବାରୁ ଖୁସି ହୋଇ ଘୋଡ଼ାଟିଏ ଦେଲା ।

ସେଦିନ ମଧ୍ୟ ହରିଣ ସେହିପରି ଉତ୍ପାତ ଆରମ୍ଭ କଲା । ରାଜା ତାଙ୍କ ଲୋକମାନଙ୍କୁ ଚାରିଦିଗକୁ ବାଣ୍ଟିକରି ପଠାଇଦେଲେ । ସେ ନିଜେ ଦକ୍ଷିଣ ଦିଗରେ ରହିଲେ । ଅନ୍ୟ ଲୋକଙ୍କ ସହ ଆଇଦୁ ମଧ୍ୟ ରାଜାଙ୍କ ଦଳରେ ରହିଲା ।

ଯେଉଁ ସୁନେଲି ହରିଣ ଏତେ କାଣ୍ଡ କରୁଥିଲା, ସେ କିନ୍ତୁ ପ୍ରକୃତ ହରିଣ ନୁହେଁ । ଅବୁଝା ରାଜାକୁ ଶାସ୍ତି ଦେବାପାଇଁ ଦେବତା ଆସିଥିଲେ ହରିଣରୂପରେ । ତେଣୁ ସେ କି ସହଜରେ ଧରାପଡ଼େ ! ଘଡ଼ିକେ ଦେଖା ଦିଏ ତ ଘଡ଼ିକେ ଅନ୍ତର୍ଦ୍ଧାନ । ସେ ଜାଣିଶୁଣି ରାଜା ଆଗରେ ଝଲକ ଦେଖାଏ । ସମସ୍ତେ ପଛରେ ରହିଗଲେ, କେବଳ ରାଜା ହରିଣ ପଛେ ପଛେ ଗୋଡ଼ଉଥାନ୍ତି; ଆଉ ତାଙ୍କ ସାଙ୍ଗରେ ଥାଏ ଆଇଦୁ । ବିବାହପରଠାରୁ ତାର ରୂପ ଓ ବେଶଭୂଷା ବଦଳଯାଇଥାଏ । ରାଜା ତାକୁ ନିଜର ଜୋଇଁ ବୋଲି ଚିହ୍ନି ପାରୁ ନ ଥାନ୍ତି । ସେ ବା କାହିଁକି ଭାବିବେ ତାଙ୍କ ଦରିଦ୍ର ଜୋଇଁ ଜଣେ ଘୋଡ଼ାଚଢ଼ାଳି ହୋଇଥିବ ବୋଲି ! ଯାହାର ଖଣ୍ଡେ ଭଲ ଲୁଗା ନ ଥିଲା, ସେ ଘୋଡ଼ା ପାଇବ କେଉଁଠୁ ?



ହରିଣ ପଛରେ ଧାଇଁ ଧାଇଁ ସନ୍ଧ୍ୟା ହେଲା । ଆଗରେ ଗୋଟାଏ ଗୁମ୍ଫା ଦେଖି ହରିଣ ତା ଭିତରେ ପଶିଗଲା । ରାଜାଙ୍କ ଘୋଡ଼ା ଅନ୍ଧାରରେ ଝୁଣ୍ଟି ପଡ଼ିବାରୁ ସେ ମଧ୍ୟ ପଡ଼ିଗଲେ । ଆଇଦୁ ଧାଇଁଯାଇ ତାଙ୍କୁ ତଳୁ ଉଠାଇଦେଲା ଏବଂ ତାଙ୍କ ଗୋଡ଼ହାତ ଚିପିଦେଲା । ଘରୁ ସାଙ୍ଗରେ ଆଣିଥିବା ଖାଦ୍ୟରୁ ରାଜାଙ୍କୁ କିଛି ଖାଇବାକୁ ଦେଲା ଏବଂ ନିଜେ ଖାଇଲା । ରାଜା ତା ଉପରେ ଖୁସି ହୋଇ ତାର ନାମ ପଚାରିଲେ । ଆଇଦୁ କିନ୍ତୁ ନିଜର ପ୍ରକୃତ ପରିଚୟ ନ ଦେଇ କହିଲା, "ମୋ ନାଁ ସାଉ ବୁ । ପିଲାଦିନେ ମା ମତେ ଏଇ ନାମରେ ଡାକୁଥିଲା ।" "ତୁମେ ଆଜି ମୋର ବହୁତ ସେବା କରିଛ । ରାଜଧାନୀକୁ ଗଲେ ମୁଁ ତୁମକୁ ପୁରସ୍କାର ଦେବି"— ଏତିକି କହି ରାଜା ଶୋଇପଡ଼ିଲେ ।

ଯେଉଁ ଗଛମୂଳେ ରାଜା ଶୋଇଥିଲେ, ସେ ଗଛରେ ଏକ ଦୁଷ୍ଟ ପିଶାଚ ରହି ବିକଟ ଶବ୍ଦ କରୁଥାଏ । ତାହା ଶୁଣି ଆଇଦୁ ରାଜାଙ୍କୁ ଅନ୍ୟ ସ୍ଥାନକୁ ଉଠିଯିବାକୁ କହିଲା, ମାତ୍ର ରାଜା ଶୁଣିଲେ ନାହିଁ । କହିଲେ, "ମୋର ହଲଚଲ ହେବାର ଶକ୍ତି ନାହିଁ । ଦେହସାରା ଦରଜ । ପିଶାଚ ମୋତେ ମାରୁ ପଛକେ, ଆଉ କୁଆଡ଼େ ଯିବି ନାହିଁ ।" ଏହା କହି ସେ ଗାଢ଼ ନିଦରେ ଶୋଇପଡ଼ିଲେ ।

ଆଇଦୁ କିନ୍ତୁ ଶୋଇବାପରି ଛଳନା କରି ଚେଇଁ ରହିଲା ଏବଂ ପିଶାଚ କଥାକୁ କାନ ଡେରି ଶୁଣିଲା । ସେ ଚିଡ଼ି ଚିଡ଼ି କହୁଥାଏ, "ଏ ଲୋକ ଦି'ଟା ମୋ ଗଛମୂଳେ ଶୋଇ ଏହାକୁ ଅପବିତ୍ର କରିଛନ୍ତି । ତାଙ୍କୁ ଜୀବନରେ ମାରିଦେବି । କାଲି ସକାଳେ ରଜା ଯେତେବେଳେ ଯିବାକୁ ବାହାରିବ, ତା ମୁଣ୍ଡଉପରେ ଗୋଟାଏ ଡାଳ ଭାଙ୍ଗିଦେବି । ସେଥିରେ ଯଦି ନ ମରିବ, ଆଗରେ ଯେଉଁ ପୋଲଟା ଅଛି, ତାର କାଠ ଖୁଣ୍ଟକୁ ଦୁଇଫାଳ କରି ଚିରିଦେବି ଯେ ସେ ଯାଉଁ ଯାଉଁ ନଈରେ ଗଳିପଡ଼ିବ । ସେଥିରୁ ଯଦି ବର୍ତ୍ତିଯିବ, ନଅରକୁ ପଶିଲାବେଳେ ଫାଟକ ଭାଙ୍ଗିଦେବି । ତା ମୁଣ୍ଡଉପରେ ଇଟା ପଥର ଅଜାଡ଼ି ହୋଇପଡ଼ିଲେ ସେ ମରିଯିବ । ତଥାପି ଯଦି ସେ ନ ମରେ, ରାତିରେ ଯେଉଁ ପାଣି ପିଇବ, ସେଥିରେ ଗ୍ଲେଟ ଛୁଞ୍ଚିମାନ ଭର୍ତ୍ତି କରିଦେବି । ସେଗୁଡ଼ାକ ତା ତଣ୍ଟିରେ ଗଳିଗଲେ ସେ ବଳେ ମରିଯିବ । କିନ୍ତୁ ଯଦି ସେ ପାଣି ନ ପିଇ ଶୋଇପଡ଼େ, ତେବେ ଗୋଟାଏ ରାକ୍ଷସ ମୂଷା ପଠାଇବି । ସେ ତାକୁ କାମୁଡ଼ି କାମୁଡ଼ି ନିଶ୍ଚେ ମାରିଦେବ ।" ଏହିପରି ଯୋଜନା କରି ରାତାରାତି ସବୁ ବ୍ୟବସ୍ଥା କରିବାପାଇଁ ପିଶାଚ ସେ ଗଛ ଛାଡ଼ି ବାହାରିଗଲା ।

ସକାଳ ହେବାରୁ ରାଜା ଉଠିଲେ । ପିଶାଚ ଉପଦ୍ରବରେ ସେ ଅଧାପ୍ରାଣ ହୋଇ ଯାଇଥିଲେ । ଘୋଡ଼ାରେ ବସିବା ପୂର୍ବରୁ ଆଇଦୁ ଘୋଡ଼ା ଦୁଇଟାଙ୍କୁ ଚରାଇବା ବାହାନାରେ ଗଛ ତଳୁ ଅଳ୍ପ ଦୂରକୁ ବାହାର କରିନେଲା । ତାପରେ ଏକା କୁଦାକେ ଦୁହେଁଯାକ ଘୋଡ଼ା ଉପରକୁ ଉଠି ଦେଲେ ଚମ୍ପଟ୍ । ଠିକ୍ ତାଙ୍କ ପଛେ ପଛେ ଗଛର ଡାଳଟା ଭାଙ୍ଗିପଡ଼ିଲା । କିଛି ଦୂର ଆଗରେ ପଡ଼ିଲା ପୋଲ । ଆଇଦୁ ପୋଲବାଟେ ନ ଯାଇ ଆଉ ଏକ ସଙ୍କୀର୍ଣ୍ଣ ସ୍ଥାନରେ ରାଜାଙ୍କୁ ନଈ ପାରି କରାଇ ନେଇଗଲା । ତେଣୁ ପିଶାଚ ଯେଉଁ ଚକ୍ରାନ୍ତ କରିଥିଲା, ତାହା କୌଣସି ଫଳ ଦେଲାନାହିଁ ।

ତୃତୀୟ ଘାଟୀ ନଅର ଫାଟକ । ସେମାନେ ଖୁବ୍ ଧୀରେ ଧୀରେ ଫାଟକ ପାଏ ଗଲେ; ଯେପରି କି କ୍ଲାନ୍ତ ହୋଇ ଶୀଘ୍ର ଯାଇପାରୁନାହାନ୍ତି । ଠିକ୍ ଫାଟକ ତଳେ ପହଞ୍ଚିବାମାତ୍ରେ ଜୋର୍‌ରେ ଘୋଡ଼ା ଦଉଡ଼ାଇ ଦେଲେ । ତାଙ୍କ ପଛେ ପଛେ ଫାଟକଟା ଭାଙ୍ଗିପଡ଼ିଲା ।

ବିପଦ କଟିଗଲା ଭାବି ଘରେ ପହଞ୍ଚି ରାଜା ନିଶ୍ଚିନ୍ତ ମନରେ ବସିପଡ଼ିଲେ ଏବଂ ଚାକରକୁ ଡାକି ପିଇବାକୁ ପାଣି ଗ୍ଲାସେ ମାଗିଲେ ।

## ଚିତ୍ରରେ କଣ ଭୁଲ ଅଛି ?




### ଉତ୍ତର

୧ । ମୁଦ୍ରାରେ ଥିବା ଇଂରାଜୀ INDIA ଡାହାଣକୁ ଓ ହିନ୍ଦୀ ବାଆଁକୁ ରହିବ । ୨ । ଜୋତାରେ ଫିତା ଲୋଇବା ଛିଦ୍ର ଦୁଇଟେଠ ସମାନ ନାହିଁ । ୩ । ଲଙ୍କା ଆମ୍ବ ଡାଳରେ ଅନ୍ୟ ଫଳ ଫଳନ୍ତୁ । ୪ । ବରଫସ୍ତୂପର ସାତ ଆଠଗୁଣ ପାଣି ତଳେ ରହିବା କଥା । ୫ । ମଟରଚାଳକର ଆସନ ମଝିରେ ନଥାଏ । ୬ । ଦେଉଳର ଛାଇ ପାଣିରେ ସିଧା ପଡ଼ୁଥାନ୍ତା ।

ଗୁକର ପାଣି ଗ୍ଲାସ ବଢ଼ାଇଦେଲା । ମାତ୍ର ରାଜା ତାକୁ ପାଟି ପାଖକୁ ନେବା ପୂର୍ବରୁ ଆଇଦୁ ତାଙ୍କ ହାତରୁ ଗ୍ଲାସଟା ଛଡ଼େଇ ନେଇ ଢାଳିଦେଲା । ଦେଖାଗଲା ପାଣିରେ ଅସଂଖ୍ୟ ଛୋଟ ଛୋଟ ଛୁଞ୍ଚି । ରାଜା ଦୁଧ ମଗାଇ ପିଇଲେ । ଆଇଦୁ ଏହାପରେ ଘରକୁ ଯିବାକୁ ବାହାରିଲା । କିନ୍ତୁ ଯିବାପୂର୍ବରୁ ସେ ପ୍ରହରୀକୁ କହିଦେଇଗଲା, "ରାତିସାକ ରାଜାଙ୍କ ଶୋଇବା ଘରେ ବତି ଜଳାଇ ରଖିବ ଏବଂ ଖଣ୍ଡା ଧରି ଜଗି ରହିବ ।"

ଠିକ୍ ଅଧରାତିରେ ଏକ ପ୍ରକାଣ୍ଡ ମୂଷା ଦାନ୍ତ କଡ଼ମଡ଼ କରି ସେ ଘରକୁ ପଶିଲା ଏବଂ ରାଜାଙ୍କ ଶେଯ ପାଖକୁ ମୁହାଁଇଲା । ପ୍ରହରୀ ଠିକ୍ ସମୟ ଦେଖି ଖଣ୍ଡାରେ ଦେଲା ଏକ ପାହାର । ଏକା ଚୋଟକେ ମୂଷା ଦୁଇଗଡ଼ ହୋଇ ମରିଗଲା ।

ତା ପରଦିନ ସକାଳେ ରାଜା ଦୂତମାନଙ୍କୁ କହିଲେ, "ସାଉ ବୂ କେଉଁଠି ଅଛି ତାକୁ ଡାକିଆଣ । ସେ ମୋ ଜୀବନ ରଖିଛି । ମୁଁ ତାକୁ ପୁରସ୍କାର ଦେବି ।" ଦୂତମାନେ ବହୁତ ଖୋଜିଲେ କିନ୍ତୁ ସାଉ ବୂ ନାମରେ କାହାକୁ ପାଇଲେ ନାହିଁ । ରାଜା ଏ ଖବର ପାଇ ରାଗି ଉଠିବାରୁ ଜଣେ ମନ୍ତ୍ରୀ କହିଲେ, "ହଜୁର, ଆଇଦୁ କାଠ ଘରକୁ ଗୁଡ଼ ସେମାନେ ସବୁଆଡ଼େ ଖୋଜିଛନ୍ତି, କିନ୍ତୁ କେହି ତାର ସନ୍ଧାନ ଦେଇପାରିଲେ ନାହିଁ ।" ରାଜା କହିଲେ, "ଆଚ୍ଛା, ତେବେ ଆଇଦୁକୁ ଡକାଅ; ସେ କାଳେ କିଛି ଜାଣିଥିବ ।"

ଶେଷରେ ଆଇଦୁ ଆସିଲା ଏବଂ ତାର ଅନ୍ୟ ନାମ ସାଉ ବୂ ବୋଲି ରାଜାଙ୍କ ଆଗରେ ପ୍ରକାଶ କଲା । ରାଜା ମଧ୍ୟ ତାକୁ ଚିହ୍ନି ପାରିଲେ ଏବଂ ତାଙ୍କରି ଜୋଇଁ ଯେ ତାଙ୍କୁ ଏବେ ବିପଦରୁ ରକ୍ଷା କରିଛି, ଜାଣି ଆନନ୍ଦିତ ହେଲେ । ରାଜା ଏକ ଭୋଜି ଉତ୍ସବରେ ଆୟୋଜନ କରାଇ ଘୋଷଣା କଲେ, "ମୋ ଅନ୍ତେ ଆଇଦୁ କାଠ ରାଜସିଂହାସନର ଅଧିକାରୀ ହେବ ।" ଏହା ପରେ ପରେ ସାନ ଝିଅକୁ ଘରକୁ ଡକାଇ ଆଣି ରାଜା କହିଲେ, "ମା, ମୁଁ ତୋ ପ୍ରତି ଯେଉଁ ଅନ୍ୟାୟ କରିଛି, ସେଥିପାଇଁ ଦୁଃଖିତ । ଏବେ ବୁଝିଲି ଯେ ମନୁଷ୍ୟର ଭାଗ୍ୟ ଅନ୍ୟର ଦୟା ଉପରେ ନିର୍ଭର କରେ ନାହିଁ । ସେ ତାର ଭାଗ୍ୟ ନିଜେ ଗଢ଼େ ।"

# ଆକାଶରେ ମରଣଦୋଳି

୧୯୪୧ ମସିହା ମେ ମାସ ୧୫ ତାରିଖ । ସକାଳ ୯ ଘଣ୍ଟା ୪୫ ମିନିଟ ସମୟ । ଆମେରିକାର ପଶ୍ଚିମ ଉପକୂଳରେ ସାନ ଡିଏଗୋ ଉପସାଗର ଉପରବର୍ତ୍ତୀ ଗୋଟିଏ ବିମାନଘାଟୀ । ସେଠାରେ ଡବି-୨ ନାମକ ଏକ ବିମାନରୁ ପାରାଚୁଟ ଡିଆଁ ଅଭ୍ୟାସ କରୁଥାନ୍ତି ବାରଜଣ ନୌବାହିନୀ କର୍ମଚାରୀ । ବନ୍ଧୁକ ଓ ଗୁଳିଗୁଳା ଭର୍ତ୍ତି ହୋଇଥିବା ତିନିଟା କାନଭାସ୍ ମୁଣା ସେମାନେ ସାଙ୍ଗରେ ନେଇଥାନ୍ତି । ଯୁଦ୍ଧବେଳେ ଏଭଳି ଜିନିଷମାନ କପରି ବିମାନରୁ ତଳକୁ ଖସେଇବାକୁ ହେବ, ତାହାର କୌଶଳ ମଧ୍ୟ ଶିକ୍ଷା କରିବେ । ତାଙ୍କ କାମ ତଦାରଖ କରିବା-ପାଇଁ ସାଙ୍ଗରେ ଯାଇଥାନ୍ତି ୨୩ ବର୍ଷର ଯୁବକ ଲେଫ୍ଟେନାଣ୍ଟ୍ ଅସିପଫ୍ । ପାରାଚୁଟଡିଆଁରେ ସେ ଥିଲେ ସବୁଠାରୁ ବେଶି ପୁରୁଖା । ଏହା ପୂର୍ବରୁ ସେ ସଫଳତାର ସହ କୋଡ଼ିଏ ଥରରୁ ଅଧିକ ଡେଇଁ ସାରିଥିଲେ ।

ଆଗ ନଅ ଜଣ ଶିଖାଳି ଡେଇଁସାରିଲେ । ତାପରେ ଦୁଇଟି ଜିନିଷବୋଝେଇ ମୁଣା ଖସାଇ ଦିଆଗଲା । ଶେଷ ମୁଣାଟିକୁ ଖସାଇବା ପାଇଁ ଅସିପଫ୍ ବିମାନର ଦ୍ୱାର ମୁହଁରେ ଆସି ଠିଆହେଲେ । ସେ ଯେମିତି ମୁଣାଟିକୁ ଠେଲି ଦେଇଛନ୍ତି, ତାଙ୍କ ପିଠିପଟେ ବନ୍ଧାଥିବା ପାରା-ଚୁଟର ଡୋରିଟା କେମିତି ମୁଣାରେ ଫାଶ ପଡ଼ିଯାଇ ଗୁଡ଼େଇ ହୋଇଗଲା । ଫଳରେ ତାଙ୍କ ପାରାଚୁଟଟା ହଠାତ୍ ଖୋଲିବାକୁ ଆରମ୍ଭ କଲା । ଅସିପଫ୍ ଆଗକୁ ଝୁଙ୍କି ପଡ଼ି ତାକୁ ଟାଣି-ନେବାକୁ ଚେଷ୍ଟା କଲାବେଳେ ବିମାନରୁ ଖସିପଡ଼ିଲେ । ସେ ଏତେ ଜୋର୍‌ରେ ଘୃଷ୍ଟି ହୋଇ ପଡ଼ିଲେ ଯେ ସେଇ ଧକ୍କାରେ ବିମାନର ଆଲୁମିନିୟମ ପଟା ଫାଟିଗଲା ଏବଂ ୭୬ ସେ. ମି. ଲମ୍ବର ଗୋଟାଏ କଣା ହୋଇଗଲା ।

ଠିକ୍ ସେତିକବେଳେ ତାଙ୍କ ଦରଖୋଲା ପାରାଚୁଟଟା ବିମାନର ଲାଞ୍ଜପାଖ ଚକରେ ଗୁନ୍ଥେଇ ହୋଇଗଲା । ତେଣୁ ସେ ତଳକୁ ଖସି ନ ପଡ଼ି ଶୂନ୍ୟରେ ଝୁଲି ରହିଲେ । କିନ୍ତୁ ପାରାଚୁଟରେ ଲାଗିଥିବା ଛାତିଫିତା ଏବଂ ଗୋଟିଏ ଗୋଡ଼ଫିତା ସାଙ୍ଗେ ସାଙ୍ଗେ ଛିଡ଼ିଗଲା । କେବଳମାତ୍ର ଗୋଟିଏ ଗୋଡ଼ଫିତା ତାଙ୍କ ଜଙ୍ଘସନ୍ଧିରେ ଗୁଡ଼େଇ ହୋଇ ରହିଗଲା । ପାରାଚୁଟର ୨୮ଟି ସିଲ୍କ ଡୋରି ମଧ୍ୟରୁ ୨୪ଟି ମଧ୍ୟ ଛିଡ଼ିଗଲା । ତେଣୁ ସେ ବିମାନର ଲାଞ୍ଜ ପାଖରୁ ତିନି ମିଟର ତଳେ ଏବଂ ଚାରି ମିଟର ପଛରେ ତଳମୁହାଁ ହୋଇ ଅସହାୟ ଅବସ୍ଥାରେ ଝୁଲିରହିଲେ ।

ବିମାନଭିତରେ ଥିବା ଲୋକମାନେ ଅମିତଫ୍‌ଙ୍କୁ ଉଠାଇ ନେବାକୁ ବହୁତ ଚେଷ୍ଟା କଲେ, କିନ୍ତୁ କାହାରି ହାତ ସେ ଯାଏ ପାଇଲା ନାହିଁ । ଜରୁରୀ ବ୍ୟବହାର ପାଇଁ ଯେଉଁ ପାରାଚୁଟ-ଖଣ୍ଡି ତାଙ୍କ ପାଖରେ ଥିଲା, ତାକୁ ସେ ଖୋଲି ନ ଥିଲେ । ତେଣୁ ଏକହାତରେ ଏରୋପ୍ଲେନ୍ ଏବଂ ଅନ୍ୟ ହାତରେ ପାରାଚୁଟ — ଏହି ଦୁଇଟିର ଟଣାଓଟରା ଫଳରେ ସେ ମନେକଲେ ତାଙ୍କ ଦେହ ଦୁଇଖଣ୍ଡ ହୋଇ ଛିଡ଼ିଯିବ । ସେତେବେଳେ ସେ ଜାଣିପାରି ନ ଥିଲେ ଯେ ତାଙ୍କର ଦୁଇଟି ପଞ୍ଜରା ହାଡ଼ ଏବଂ ତିନୋଟି ମେରୁହାଡ଼ ଭାଙ୍ଗି ଯାଇଛି ।



ବିମାନକୁ ତଳେ ଓହ୍ଲାଇ-ଦେଲେ ସେ ଭୂଇଁରେ ପିଟି ହୋଇ ଅମିତଫ୍‌ଙ୍କର ପ୍ରାଣ ଯିବ, ଏ କଥା ପାଇଲଟ ନିଶ୍ଚିତଭାବରେ ଜାଣିଥିଲେ, ତେଣୁ ଏ ଅବସ୍ଥାରେ ସେ କଣ କରିବେ ସ୍ଥିର କରି-ପାରିଲେ ନାହିଁ । ଅମିତଫ୍‌ଙ୍କ ଜୀବନରକ୍ଷା ତାଙ୍କ ସାଧ୍ୟର ଅତୀତ ଜାଣି ସେ ବିମାନଟିକୁ ୯୦ ମିଟର ଉଚ୍ଚତାକୁ ଖସାଇ ଆଣିଲେ ଏବଂ ଉପରେ ଚକ୍‌କର ଦେବାକୁ ଲାଗିଲେ । ସେ ଭାବିଥିଲେ ବିମାନଘାଟୀର ଲୋକମାନେ ତାଙ୍କୁ ଦେଖି ଉଦ୍ଧାରର କିଛି ଗୋଟାଏ ଉପାୟ କରିବେ, କିନ୍ତୁ ସେମାନେ ମନେକଲେ କୌଣସି ଯୁଦ୍ଧ-ବିମାନର କର୍ମଚାରୀ ଜନ୍ମଷପନ

ଖସାଇବାର କୌଶଳ ଅଭ୍ୟାସ କରୁଛନ୍ତି । ତେଣୁ କେହି ସେ ଦୁର୍ଘଟଣା ଉପରେ ଗୁରୁତ୍ୱ ଦେଲେ ନାହିଁ ।

ସୌଭାଗ୍ୟକୁ ଠିକ୍ ସେତକବେଳେ ୩୪ ବର୍ଷ ବୟସ୍କ ବିଲ୍ ଲେଖି କାର୍ଯ୍ୟରୁ ଫେରି ବିମାନଘାଟୀରେ ଓହ୍ଲାଉଥାନ୍ତି । ସେ ଜଣେ ନୌବାହିନୀ ପାଇଲଟ୍ । ତାଙ୍କ ଗ୍ଲେଟ ବିମାନଟିରେ ମାତ୍ର ଦୁଇଜଣଙ୍କ ବସିବାପାଇଁ ଜାଗା ଥାଏ । ଜନ୍ ମ୍ୟାକ୍‌କାଣ୍ଡସ୍ ନାମକ ଆଉ ଜଣେ ପାଇଲଟ୍ ମଧ୍ୟ ସେଠାରେ ଉପସ୍ଥିତ ଥାଇ ନିଜ ବିମାନକୁ ପରୀକ୍ଷା କରୁଥାନ୍ତି । ପ୍ରଥମେ ଲେଖିଙ୍କର ଦୃଷ୍ଟି ପଡ଼ିଲା ଉପରେ ଚକ୍‌କର ଦେଉଥିବା ଡସି-୨ ବିମାନ ଉପରେ । ସେ ମ୍ୟାକ୍‌କାଣ୍ଡସ୍‌ଙ୍କୁ ଡାକି କହିଲେ, "ଦେଖିଲଣି, ଜଣେ ଲୋକ ସେ ଉଡ଼ାଜାହାଜରୁ କେମିତି ଦଉଡ଼ିରେ ଝୁଲୁଚି ! ତାଙ୍କୁ ଆଣିପାରିବା ନାହିଁ ?" "ଚେଷ୍ଟା କରିବା ଚାଲ," ମ୍ୟାକ୍‌କାଣ୍ଡସ୍ ଉତ୍ତର ଦେଲେ ।

ପ୍ରତି ଚାରି ପାଞ୍ଚ ମିନିଟ ଅନ୍ତରରେ ଡସି-୨ ଥରେ ଲେଖାଏଁ ବିମାନଘାଟୀ ଉପରେ ଚକ୍‌କର ଦେଉଥାଏ ।

ମୁହୂର୍ତ୍ତେମାତ୍ର ବିଳମ୍ବ ନ କରି ବିଲ୍ ଲେଖି ବିମାନଘାଟୀର କଣ୍ଟ୍ରୋଲ ଅଫିସକୁ କହିଲେ, "ମତେ ଟିକିଏ ସବୁଜ ଆଲୁଅ ଦେଖାନ୍ତୁ, ମୁଁ ଉପରକୁ ଯିବି ।" ଉପରିସ୍ଥ ହାକିମଙ୍କଠାରୁ ଅନୁମତି ନେବାକୁ ମଧ୍ୟ ତାଙ୍କୁ ବେଳ ନ ଥିଲା । ମ୍ୟାକ୍‌କାଣ୍ଡସ୍‌ଙ୍କୁ ସାଙ୍ଗରେ ଧରି ସେ ବିମାନରେ ବସିଲେ ।

ଅଳ୍ପ କେତେକ ମିନିଟ ଭିତରେ ଲେଖି ୯୦ ମିଟର ଉଚ୍ଚକୁ ଉଠିଯାଇ ଡସି-୨ ଉଡ଼ାଜାହାଜର ପଛରେ ଲାଗିଗଲେ । ବେତାରଦ୍ୱାରା କଥାବାର୍ତ୍ତା ହେବାର ସୁବିଧା ନ ଥିବାରୁ ହାତରେ ଠାରି ଯାହା କିଛି ଜଣାଇବାକୁ ପଡ଼ୁଥାଏ । ଲେଖି ଖୁବ୍ ସାବଧାନରେ ବଡ଼ ବିମାନର ପଛେ ପଛେ ରହି ଅସିପଫ୍‌ଙ୍କ ପାଖରେ ପହଞ୍ଚିବାକୁ ପାଞ୍ଚଥର ଚେଷ୍ଟା କଲେ, ମାତ୍ର ପବନ ବାଧା ଦେଉଥିବାରୁ କିଛି କରିପାରିଲେ ନାହିଁ । ସେତେବେଳକୁ ତଳେ ଥିବା ସମସ୍ତ ଲୋକ ଏକ ଦୃଷ୍ଟିରେ ଉପରକୁ ଚାହିଁ ରହିଥାନ୍ତି । କର୍ମଚାରୀମାନେ ଅଫିସକାମ ଛାଡ଼ି ଉଠି ଆସିଲେ, ପିଲାମାନେ ଖେଳ ବନ୍ଦ କରିଦେଲେ । କେହି ଛାତ ଉପରେ, କେହି ଖୋଲା ଜାଗାରେ ଠିଆ ହୋଇ ଗ୍ଲେଟ ବିମାନଟିର ପ୍ରତ୍ୟେକ ଗତିବିଧି ଲକ୍ଷ୍ୟ କରୁଥାନ୍ତି । କେହି କେହି ମଧ୍ୟ କାତର କଣ୍ଠରେ ଭଗବାନଙ୍କୁ ପ୍ରାର୍ଥନା କରୁଥାନ୍ତି କପରି ଏ ଉଦ୍ଧାର କାର୍ଯ୍ୟ ସଫଳ ହେଉ । ଆଉ କୌଣସି ଦିଗକୁ କାହାର ଦୃଷ୍ଟି ନ ଥାଏ ।

ଲୋରୀ ଭାବିଲେ ସମୁଦ୍ର ଉପରେ ପବନର ଜୋର୍ କମ୍ ଥିବ । ଏଣୁ ସେ ଡସି-୨ ର ଚାଳକଙ୍କୁ ସେହିଆଡ଼କୁ ବିମାନ ନେବାକୁ ହାତ ହଲାଇ ସଙ୍କେତ ଦେଲେ । ସଙ୍ଗେ ସଙ୍ଗେ ବଡ଼ ଉଡ଼ାଜାହାଜଟା ୯୦୦ ମିଟର ଉଚ୍ଚକୁ ଉଠିଯାଇ ସମୁଦ୍ରଆଡ଼େ ମୁହାଁଇଲା ଏବଂ ଛୋଟ ବିମାନଟି ତା ପିଛା ଧରି ଚାଲିଲା ।

ମ୍ୟାକ୍ କାଣ୍ଡସ୍ ପ୍ରସ୍ତୁତ ହୋଇ ରହିଥାନ୍ତି ସୁବିଧା ପାଇଲାମାତ୍ରେ ଅସିପଫ୍ଙ୍କୁ ଝିଙ୍କି-ନେବେ । ସେ ଦେଖିଲେ ତାଙ୍କର ଗୋଟିଏ ଗୋଡ଼ରେ ଦଉଡ଼ିଟାଏ ଗୁଡ଼େଇ ହୋଇଯାଇଛି । ସେଇଥିରୁ ସେ ତଳମୁହାଁ ହୋଇ ଝୁଲୁଛନ୍ତି ଏବଂ ତାଙ୍କ ଟୋପିରୁ ଟୋପା ଟୋପା ହୋଇ ରକ୍ତ ପଡ଼ୁଛି । ଲୋରୀଙ୍କୁ ଖୁବ୍ ହୁସିଆରରେ ବିମାନ ଚଳାଇବାକୁ ପଡ଼ୁଥାଏ । ସେ ଜାଣିଥାନ୍ତି ଟିକିଏ ଭୁଲ ହେଲେ ତାଙ୍କ ବିମାନ ଆଗରେ ଘୂରୁଥିବା ପଙ୍ଖା (propeller)ରେ ବାଜି ଅସିପଫ୍ଙ୍କ ହାତଗୋଡ଼ ଛତୁ ହୋଇଯିବ ।

ଶେଷରେ ଅସାଧ୍ୟ ସାଧିତ ହେଲା । ଯେଉଁ ଦଉଡ଼ିରୁ ଅସିପଫ୍ ଝୁଲୁଥିଲେ ତା ତଳକୁ ଲୋରୀ ଖୁବ୍ ସାବଧାନରେ ତାଙ୍କ ବିମାନଟିକୁ ନେଇଗଲେ । ମ୍ୟାକ୍ କାଣ୍ଡସ୍ ଠିକ୍ ବେଳ ଦେଖି ଅସିପଫ୍ଙ୍କ ଅଣ୍ଟାକୁ ଧରି ଚିଲ ପରି ଝାମ୍ପି ଆଣିଲେ । ସେତେବେଳେ ଅସିପଫ୍ ଯେପରି ଜୀବନବିକଳରେ ତାଙ୍କ କାନ୍ଧକୁ ଜାବୁଡ଼ି ଧରିଲେ, ତାହା ଦେଖି ମନେହେଲା ସେ ଜୀବନର ଆଶା ସମ୍ପୂର୍ଣ୍ଣ ଛାଡ଼ି ଦେଇଥିଲେ ।



ଅସିପଫ୍‌ଙ୍କୁ ଶୁଆଇ ରଖିବାପାଇଁ ଗ୍ଲେଟ ବିମାନଟିରେ ଜାଗା ନ ଥିଲା; ତେଣୁ ତାଙ୍କ ମୁଣ୍ଡଟିକୁ କୋଳରେ ରଖି ଏବଂ ଦୁଇ ହାତରେ ତାଙ୍କ ଦେହକୁ ଆଶ୍ରା ଦେଇ ମ୍ୟାକ୍‌କାଣ୍ଟ୍‌ସଙ୍କୁ ବସିବାକୁ ହେଲା । ସେପର୍ଯ୍ୟନ୍ତ ବଡ଼ ବିମାନ ଦେହରେ ପାରାଚୁଟ ଦଉଡ଼ିଟା ଲାଗି ରହିଥାଏ । ଦୁହିଁଙ୍କର ତ ହାତ ବନ୍ଦ, ତାକୁ ପୁଣି କାଟିବେ କେମିତି ? ଲେଖି ବିଚକ୍ଷଣ କୌଶଳ ସହକାରେ ତାଙ୍କ ପ୍ରୋପେଲର ସାହାଯ୍ୟରେ ତାକୁ ଛିଣ୍ଡାଇଦେଲେ । ତେତିଶ ମିନିଟ କାଳ ଶୂନ୍ୟରେ ଝୁଲିରହିବା ପରେ ଅସିପଫ୍‌ଙ୍କ ଦେହ ଶେଷରେ ମୁକ୍ତ ହେଲା ।

ତଥାପି ବିପଦର ଆଶଙ୍କା ପୂରାପୂରି ଦୂର ହୋଇ ନ ଥାଏ । ଅସିପଫ୍‌ଙ୍କ ଦେହର ବେଶିଭାଗ ବିମାନ ବାହାରକୁ ଝୁଲି ରହିଥାଏ । ଏତିକିବେଳେ ପାରାଚୁଟଟା କଟିଯିବାରୁ ତାହା ଉଡ଼ି ଆସି ଗ୍ଲେଟ ବିମାନର ଲାଞ୍ଜରେ ଗୁଡ଼େଇ ହୋଇଗଲା । ଫଳରେ ବିମାନଟିକୁ ଆୟତ୍ତରେ ରଖି ଚଳାଇବା ଲେଖିଙ୍କ ପକ୍ଷରେ କଷ୍ଟକର ହୋଇପଡ଼ିଲା । କିନ୍ତୁ ତାଙ୍କର ଅସାଧାରଣ ସାହସ ଏବଂ ବିମାନଚାଳନା କୌଶଳଯୋଗୁଁ ଅସମ୍ଭବ ସେଦିନ ସମ୍ଭବ ହେଲା । ନିଶ୍ଚିତ ମୃତ୍ୟୁ ମୁଖରୁ ଗୋଟିଏ ମୂଲ୍ୟବାନ ଜୀବନ ରକ୍ଷାପାଇଲା । ପାଞ୍ଚମିନିଟ ପରେ ସେହି ଗ୍ଲେଟ ବିମାନଟି ଯେତେ-ବେଳେ ଭୂଇଁରେ ଆସି ଲାଗିଲା, ସେତେବେଳର ଦୃଶ୍ୟ ବର୍ଣ୍ଣନା କରିହେବ ନାହିଁ । ଶହ ଶହ ଲୋକଙ୍କ ହର୍ଷଧ୍ୱନିରେ ମୁଖରିତ ହୋଇଉଠିଲା ସେ ବିମାନଘାଟୀ ।

ଏହା ପରେ ପରେ କିନ୍ତୁ ଅସିପଫ୍ ଅଚେତ ହୋଇପଡ଼ିଲେ । ତେଣୁ ସଙ୍ଗେ ସଙ୍ଗେ ତାଙ୍କୁ ଡାକ୍ତରଖାନାକୁ ନିଆଗଲା । ଲେଖି ଏବଂ ତାଙ୍କର ବନ୍ଧୁ କିଛି ସମୟ ବିଶ୍ରାମ ନେଲା ପରେ ତାଙ୍କ ନିତିଦିନିଆ କାମରେ ଯୋଗଦେଲେ ।

ଏହି ଘଟଣାର ତିନି ସପ୍ତାହ ପରେ ସେହି ଦୁଇଜଣ ଉଦ୍ଧାରକାରୀ ବୀରଙ୍କୁ ଓ୍ୱାଶିଙ୍ଗଟନ୍ ନିଆଯାଇ ରାଷ୍ଟ୍ରୀୟ ସମ୍ମାନ ପ୍ରଦାନ କରାଗଲା ।

ପୂର୍ଣ୍ଣ ଆରୋଗ୍ୟ ଲାଭ କରିବାପାଇଁ ଅସିପଫ୍‌ଙ୍କୁ ଲାଗିଲା ଦୀର୍ଘ ଛଅ ମାସ । ଡାକ୍ତରଖାନାରୁ ଖଲାସ ହେବାପରେ ସେ ପୁଣି ନିଜ କାର୍ଯ୍ୟରେ ଯୋଗ ଦେଲେ ଏବଂ ପୂର୍ବପରି ପାରାଚୁଟ ଡିଆଁ ଅଭ୍ୟାସ କରିବାରେ ଲାଗିଲେ । କବି ଯଥାର୍ଥରେ କହିଛନ୍ତି :

'ପଛଘୁଞ୍ଚା ନାହିଁ ବୀରର ଜାତକେ
ନ ମରେ କେବେହେଁ ସେ ପରାଣ ଆତଙ୍କେ ।'

# ରୂପନଗରର ରୂପକଥା

ଜଣେ ରାଜାଙ୍କର ଦୁଇଟି ରାଣୀ ଥିଲେ— ସୁଲକ୍ଷ ଓ ଦୁର୍ଲକ୍ଷ । ରାଜା ସୁଲକ୍ଷକୁ ବେଶି ଭଲ ପାଆନ୍ତି ଓ ସବୁ କଥାରେ ତାଙ୍କୁ ପଚାରି କାମ କରନ୍ତି । ତେଣୁ ନଅର ଭିତରେ ସେ ବେଶି କ୍ଷମତା ଦେଖାଏ । ଦୁର୍ଲକ୍ଷର ଦୁଇଟି ପୁଅ—ହେମନ୍ତ ଓ ବସନ୍ତ । ରୂପରେ, ଗୁଣରେ କେହି କାହାକୁ ଊଣା ନୁହନ୍ତି । କିନ୍ତୁ ସୁଲକ୍ଷର ସେଇ ଗୋଟିଏ ବିଷୟରେ ଦୁଃଖ ଥାଏ । ତାର ପିଲାଛୁଆ ନ ଥାନ୍ତି । ସେଥିପାଇଁ ସେ ଦୁର୍ଲକ୍ଷକୁ ଆଦୌ ଦେଖି ସହି ପାରେନାହିଁ । ସବୁବେଳେ ତା ପିଲାଙ୍କ ଉପରେ ଚିଡ଼୍ ଚିଡ଼୍ ହୁଏ ।

ହିଂସା ମଣିଷକୁ ପଶୁଠାରୁ ହୀନ କରିଦିଏ । ସୁଲକ୍ଷ ମୁଣ୍ଡରେ ଦିନେ ଗୋଟାଏ ଖଳବୁଦ୍ଧି ପଶିଲା । ସେ ବିଚାରିଲା ସାନ ରାଣୀକୁ ଓ ତା ପିଲା ଦୁଇଟାଙ୍କୁ କୌଶଳ କରି ମାରିଦେବ । ଗୋଟାଏ ଗୁଣିଆ ପାଖକୁ ଯାଇ ପରାମର୍ଶ କଲା । ତାଠାରୁ କିଛି ବିଷ ମଲମ ଆଣି ଦୁର୍ଲକ୍ଷକୁ ଗାଧୁଆତୁଠକୁ ଡାକିନେଲା ଏବଂ ଶ୍ରଦ୍ଧା ଦେଖାଇ ତା ଦେହରେ ସେତକ ବୋଳିଦେଲା । ବିଷଜ୍ୱାଳାରେ ଛଟପଟ ହୋଇ ସେ ମରିଯିବାରୁ ତାକୁ ପାଣିରେ ଭସେଇ ଦେଲା । ଘରକୁ ଆସି କହିଲା ସାନରାଣୀ ସୁଅରେ ଭାସିଯାଇଛି ।



ବଡ଼ ବିଚିତ୍ର କଥା, ଦୁର୍ଲକ୍ଷ ପାଣିରେ ନ ମରି ଗୋଟିଏ ଶୁଆ ରୂପ ଧରି ବହୁଦୂରକୁ ଉଡ଼ିଗଲା । ଉଡ଼ି ଉଡ଼ି ଯାଇ ସେ ରୂପନଗର ରାଜାଙ୍କ ଉଆସ ଭିତରେ ଗୋଟିଏ ବଉଳଗଛରେ ବସି ପଡ଼ିଲା । ରାଜଜେମା ବାସନ୍ତୀଲତା ତାକୁ ଦେଖି ପୋଷିବାକୁ ମନ କରିବାରୁ ରାଜା ତାକୁ ଧରାଇ ଦେଲେ । ବାସନ୍ତୀ ତାକୁ ସୁନା ପଞ୍ଜୁରୀରେ ରଖି ବହୁ ଆଦରରେ ପାଳିଲା ।

ଏଣେ ମାଆଙ୍କୁ ହରାଇ ହେମନ୍ତ ଓ ବସନ୍ତ ବହୁତ କାନ୍ଦିଲେ । ତାଙ୍କ ଦୁଃଖରେ ମହାରାଜ ବ୍ୟସ୍ତ ହେଲେ, ମାତ୍ର ରାକ୍ଷସୀ ସୁଲକ୍ଷଣାର ମନ ଟିକିଏ ବି ତରଳିଲା ନାହିଁ । ଓଲଟି ସେ ତାଙ୍କୁ ଜୀବନରେ ମାରିଦେବାକୁ ଉପାୟ ପାଞ୍ଚୁଥାଏ । ଦିନେ ସେ ଘରର ଜିନିଷପତ୍ର ଫିଙ୍ଗା-ଫୋପଡ଼ା କରି ଖୁବ୍ ରାଗରେ ପାଟିତୁଣ୍ଡ କଲା । ଦାସୀଠାରୁ ଖବର ପାଇ ରାଜା ଘରକୁ ଆସିଲେ ଏବଂ ରାଗିବାର କାରଣ ରାଣୀଙ୍କୁ ପଚାରିଲେ । ସୁଲକ୍ଷ କାନ୍ଦି କାନ୍ଦି କହିଲା, "ସେ ପିଲା ଦୁଇଟାଙ୍କ ଜାଲାରେ ଏ ଘରେ ମୁଁ ଆଉ ରହି ପାରିବି ନାହିଁ । ମେଞ୍ଚଡ଼ ଟୁଆ ଦୁଇଟା, ମତେ ପୁଣି ଗାଳିଦେବେ । ଆଜି ତାଙ୍କ ତଣ୍ଟି ଚିପି ମାରିଦିଅ, ନୋହିଲେ କାଲି ସକାଳୁ ମୁଁ ବିଷ ଖାଇଦେବି ।"

କଥାରେ ଅଛି, ସାପକୁ ଦୁଧ ପିଇବାକୁ ଦେଲେ ତାର ବିଷ ବଢ଼େ । ସେହିପରି ମୂର୍ଖଙ୍କୁ ଉପଦେଶ ଦେଲେ କିଛି ଫଳ ହୁଏ ନାହିଁ, ଓଲଟି ସେ ବେଶି ରାଗେ । ରାଜା ନାଗର ହୋଇ କହିଲେ, "ମୁଁ ତାର ବ୍ୟବସ୍ଥା କରୁଛି । ତୁମେ ଶାନ୍ତ ହୁଅ ।"

"ନା, ତାଙ୍କ ରକ୍ତ ଆଣି ମତେ ଦେଖାଇବ ଆଗେ ଜବାବ କର ।" ରାଜା ବାଧ୍ୟ ହୋଇ ରାଣୀ କଥାରେ ହଁ ଭରିଲେ ଏବଂ ସିପାହୀଙ୍କୁ ଡାକି ଆଦେଶ ଦେଲେ, "ହେମନ୍ତ ଓ ବସନ୍ତ ଦୁଇଜଣଙ୍କୁ ଭୁଲାଇ ବଣକୁ ନେଇଯାଅ ଏବଂ ତାଙ୍କ ରକ୍ତ ଆଣି ରାଣୀଙ୍କୁ ଦେଖାଅ ।"

ସିପାହି ପିଲା ଦୁହିଁଙ୍କୁ ବଣକୁ ନେଇଗଲା, କିନ୍ତୁ ତାଙ୍କୁ ମାରିବାକୁ ତାର ହାତ ଗଲା ନାହିଁ । ସେ ତାଙ୍କୁ ସେହିଠାରେ ଛାଡ଼ିଦେଇ ଗୋଟାଏ ବିଲୁଆ ମାରି ତାର ରକ୍ତ ଆଣି ରାଣୀଙ୍କୁ ଦେଖାଇଲା । ରକ୍ତ ଦେଖି ରାଣୀର ରାଗ ଥଣ୍ଡା ହେଲା ।

ସିପାହୀ ଚାଲିଗଲାପରେ ଦୁଇଭାଇ ବଣ ଭିତରେ କିଛି ବାଟ ଚାଲି ଚାଲି ଗୋଟିଏ ଗଛ-ମୂଳେ ଥକାମାରି ବସିପଡ଼ିଲେ । ବସନ୍ତକୁ ଶୋଷ କରିବାରୁ ତାକୁ ଅପେକ୍ଷା କରିବାକୁ କହି ହେମନ୍ତ ପାଣି ଖୋଜିବାକୁ ଚାଲିଗଲା । କିଛି ଦୂରରେ ଗୋଟିଏ ଝରଣା ଦେଖି ସେ ନିଜର ଚାଦରଖଣ୍ଡି ଭିଜାଇ ପାଣି ଆଣିବାକୁ ଯାଉଛି, ଶୁଣିଲା ମନୁଷ୍ୟମାନଙ୍କର ଶବ୍ଦ । ସେ ରାଜ୍ୟର ରାଜା ଅପୁତ୍ରିକ ଅବସ୍ଥାରେ ମରିଯିବାରୁ କିଏ ରାଜା ହେବ ପ୍ରଜାମାନଙ୍କର ଭାବନା ପଡ଼ିଥିଲା । ପାଟହାତୀ ପିଠିରେ ସୁନା କଳସ ରଖି ଲୋକମାନେ ତାଙ୍କୁ ରାଜ୍ୟସାରା ବୁଲଉଥିଲେ । ଯାହା

ମୁଣ୍ଡରେ ହାତୀ କଳସ ଢାଳିବ, ତାକୁ ଧରି ନେଇ ରଜା କରିବେ । ହେମନ୍ତଠାରେ ରାଜଲକ୍ଷଣ ଦେଖି ହାତୀ ତା ମୁଣ୍ଡରେ କଳସ ଢାଳିଦେଲା । ଲୋକମାନେ ଆନନ୍ଦରେ ହରିବୋଲ ଦେଇ ବାଜା ବଜେଇଲେ ଏବଂ ତାକୁ ହାତୀରେ ବସାଇ ରାଜଧାନୀକୁ ନେଇଗଲେ । ହେମନ୍ତ ଯେତେ ଯାହା କହିଲା, କେହି ଶୁଣିଲେ ନାହିଁ ।

ରାଜଧାନୀରେ ପହଞ୍ଚିବାମାତ୍ରେ ହେମନ୍ତର ଅଭିଷେକ ହେଲା । ସେ ରାଜଗାଦିରେ ବସି ହେଲା ହିମାମିନଗରର ରଜା । ଏତେ ଅଳ୍ପ ବୟସରୁ ରାଜ୍ୟଶାସନର ଦାୟିତ୍ୱ ତା ମୁଣ୍ଡ ଉପରେ ପଡ଼ିବାରୁ ସେ ଏତେ ବ୍ୟସ୍ତ ରହିଲା ଯେ ବସନ୍ତ କଥା ଏକବାର ଭୁଲିଗଲା ।

ଏଣେ ଭାଇକୁ ଅପେକ୍ଷା କରି ବସନ୍ତ ବସିଥାଏ । ଜଣେ ସାଧୁ ସେଠାରେ ଆସି ପହଞ୍ଚିଲେ । ତାର ସୁନ୍ଦର ଚେହେରା ଦେଖି ଏବଂ ତା ଦୁଃଖର କାହାଣୀ ଶୁଣି ସେ ତାକୁ ନିଜ ଆଶ୍ରମକୁ ଡାକିନେଲେ । ବସନ୍ତ ତାଙ୍କ ପାଖରେ ରହି ଶାସ୍ତ୍ର ପୁରାଣ ଶିକ୍ଷା କଲା ।

ରୂପନଗରର ରାଜଜେମା ବାସନ୍ତୀ ଏଥିମଧ୍ୟରେ ବଡ଼ ହୋଇଗଲାଣି । ତାର ସ୍ୱୟମ୍ବର ପାଇଁ ରଜା ଯୋଗାଡ଼ କରୁଥାନ୍ତି । ପୋଷା ଶୁଆଟି କଥା କହି ଶିଖିଛି । ସେ ଦିନେ ବାସନ୍ତୀକୁ କହିଲା, "ତୁ ଖୁବ୍ ସୁନ୍ଦରୀ ଓ ବୁଦ୍ଧିମତୀ । ପିଲାଟିଦିନୁ ମୁଁ ତତେ ଦେଖିଆସୁଛି । ତୋ



ସ୍ୱୟମ୍ବରକୁ ଅନେକ ରାଜପୁତ୍ର ନିଶ୍ଚୟ ଆସିବେ । ତୁ କଣ ଖାଲି ରୂପ ଦେଖି ପତିବରଣ କରିବୁ ? ଗୁଣ ଦେଖିବୁ ନାହିଁ ? ମୋ କଥା ଶୁଣ୍ । ବାପାଙ୍କୁ କହ, ଯେ ତୋ ମୁଣ୍ଡପାଇଁ ଗଜମୁକ୍ତାଟିଏ ଉପହାର ଦେଇପାରିବ, ତୁ ତାକୁଇ ବିଭା ହେବୁ ।"

ବାସନ୍ତୀ ସେଇ କଥା ପିତାଙ୍କୁ ଜଣାଇବାରୁ ରାଜା ସେହି ଅନୁସାରେ ରାଜ୍ୟରେ ଘୋଷଣା ଦେଲେ । ରାଜକନ୍ୟାର ପଣ ଶୁଣି ଅନେକ ରାଜପୁତ୍ର ବନ, ପର୍ବତ, ନଦୀ, ସମୁଦ୍ର ପାର ହୋଇ ନାନା ଦେଶ ଭ୍ରମଣ କଲେ, କିନ୍ତୁ କେହି ଗଜମୁକ୍ତା ପାଇଲେ ନାହିଁ । ଯିବାପୂର୍ବରୁ ସେମାନେ ପ୍ରତିଜ୍ଞା କରିଥିଲେ, ଗଜମୁକ୍ତା ନ ଆଣିଲେ ଅବଶିଷ୍ଟ ଜୀବନ ରୂପନଗର ରାଜାଙ୍କ ଦାସ ହୋଇ ରହିବେ । ତେଣୁ ଯେଉଁମାନେ ବାଟରେ ମରିଗଲେ ସେ ତ ମଲେ; ଯେ ବିଫଳ ହୋଇ ଫେରିଲେ, ସେ ରାଜାଙ୍କ ଦାସ ହୋଇ ରହିଲେ ।

ଏ ସମ୍ବାଦ ହିମାଳୀନଗରର ରାଜା ହେମନ୍ତ କାନକୁ ଗଲା । ସ୍ୱୟମ୍ବରରେ ସାଥୀ ରାଜପୁତ୍ରମାନଙ୍କର ଦୁର୍ଦ୍ଦଶା ଘଟିଥିବା ଶୁଣି ତା ମନରେ କଷ୍ଟ ହେଲା । ସେ ଏହାର ତୀବ୍ର ପ୍ରତିବାଦ କରି ରୂପନଗର ଆକ୍ରମଣ କରିବାକୁ ଧମକ ଦେଲା ।

ବସନ୍ତ ଯେଉଁ ସାଧୁଙ୍କ ପାଖରେ ଥିଲା, ତାଙ୍କ ଆଶ୍ରମ ହତାରେ ଗୋଟିଏ କଦମ୍ବ ଗଛ ଥିଲା । ଦିନେ ବସନ୍ତ ସେହି ଗଛମୂଳେ ବସିଛି, ଶୁଣିଲା ଦୁଇଟି ପକ୍ଷୀ କଥାବାର୍ତ୍ତା ହେଉଛନ୍ତି । "ବାସନ୍ତୀର ସ୍ୱୟମ୍ବର କାହିଁକି ହୋଇପାରୁନାହିଁ", ତାର ଉତ୍ତରରେ ଗୋଟିଏ ପକ୍ଷୀ କହିଲା, "ଗଜମୁକ୍ତା ପାଇବା ସହଜ କଥା ନୁହେଁ । କ୍ଷୀର ସମୁଦ୍ର ମଝିରେ ଯେଉଁ ପ୍ରକାଣ୍ଡ ସୁବର୍ଣ୍ଣ ପଦ୍ମ ଫୁଟିଛି, ତା ଉପରେ ଠିଆ ହୋଇଛି ଗୋଟିଏ ହାତୀ । ସେଇ ହାତୀର ମୁଣ୍ଡରେ ଗଜମୁକ୍ତା ଅଛି । ଖୁବ୍ ସାହସୀ ଲୋକ ନ ହେଲେ ତାକୁ ଆଣିବ କିଏ ?"

ଏ କଥା ଶୁଣି ବସନ୍ତ ସେ ପକ୍ଷୀକୁ କହିଲା, "ହେ ପକ୍ଷୀରାଜ, ମୁଁ ତୁମ କଥା ଶୁଣିଛି । ତୁମେ ଯଦି ଏତେ କଥା ଜାଣିଛ, ମତେ ଦୟାକରି ସାହାଯ୍ୟ କର । ମୁଁ ଗଜମୁକ୍ତା ଆଣିବାକୁ ଯିବି ।" ପକ୍ଷୀ କହିଲା, "ତେବେ ଶୁଣ । ଏ କଦମ୍ବ ଗଛକୁ ପୋଷାକ ମାଗ । ସେ ଦେବ । ତାକୁ ପିନ୍ଧି ସାଧୁଙ୍କଠାରୁ ତ୍ରିଶୂଳ ନେଇ ଚାଲିଯାଅ । ହାତୀ ମୁଣ୍ଡରେ ତ୍ରିଶୂଳ ବିଦ୍ଧ କଲେ ଗଜମୁକ୍ତା ମିଳିବ ।"

ବସନ୍ତ ସେହି ଅନୁସାରେ କଦମ୍ବ ଗଛଠାରୁ ପୋଷାକ ଓ ସାଧୁଙ୍କଠାରୁ ତ୍ରିଶୂଳ ନେଇ ଅନେକ ଦିନ ପରେ କ୍ଷୀରସମୁଦ୍ର ପାଖରେ ପହଞ୍ଚିଲା । ସେଠାରେ ଦେଖିଲା ଅସଂଖ୍ୟ ସୁବର୍ଣ୍ଣ



ପଦ୍ମଫୁଲ ଫୁଟିଛି, କିନ୍ତୁ ଗୋଟିଏ ଫୁଲଉପରେ ଧଳାହାତୀ ଠିଆହୋଇ ତା ଶୁଣ୍ଢରେ କ୍ଷୀରକୁ ଶୋଷିନେଉଛି ଏବଂ ନିଜ ଉପରେ ଢାଳି ଢାଳି ଖେଳୁଛି । ବସନ୍ତ ଯେମିତି ତା ମୁଣ୍ଡଉପରକୁ ଲକ୍ଷ୍ୟ କରି ତ୍ରିଶୂଳ ମାରୁଛି, ସାଙ୍ଗେ ସାଙ୍ଗେ ସେ ହାତୀ ଓ ସେ ସମୁଦ୍ର କୁଆଡ଼େ ଉଭେଇଗଲା । କେବଳ ପଦ୍ମଫୁଲ ଉପରେ କଣ ଗୋଟାଏ ଚକ୍ ଚକ୍ ଦିଶୁଥାଏ । ତାହା ଗଜମୁକ୍ତା ହୋଇଥିବ ଭାବି ସେ ତାହାକୁ ଆଣି ନିଜ ପଗଡ଼ିରେ ଖଞ୍ଜିଲା ଏବଂ ସୁନାପଦ୍ମଟିଏ ଧରି ଘରକୁ ଫେରିଲା ।

ରୂପନଗରରେ ପହଞ୍ଚି ସେ ରାଜାଙ୍କୁ ଭେଟି ଗଜମୁକ୍ତାଟି ଦେଖାଇଲା । ରାଜା କହିଲେ, "ତୁମେ ଗଜମୁକ୍ତା ଆଣିଛ ଦେଖି ମୁଁ ଖୁସି ହେଲି, ମାତ୍ର ପଡ଼ୋଶୀ ରାଜା ହେମନ୍ତକୁମାର ମୋ ରାଜ୍ୟ ଆକ୍ରମଣ କରିଛି । ଯୁଦ୍ଧ ଶେଷ ନ ହେଲେ ବିବାହ କାର୍ଯ୍ୟ ହୋଇପାରିବ ନାହିଁ ।" ହେମନ୍ତ ନାମ ଶୁଣି ବସନ୍ତ ଚମକି ପଡ଼ିଲା । କିଏ ଏହି ହେମନ୍ତ ? ତା ବଡ଼ ଭାଇ ନୁହେଁ ତ ! ସେ କହିଲା, "ହଉ ତେବେ, ଯୁଦ୍ଧ ବନ୍ଦ ହେଲେ ମୁଁ ଆପଣଙ୍କୁ ଦେଖା କରିବି ।" ସେଠାରୁ ବିଦାୟ ନେଇ ସେ ହିମାନୀନଗର ଯାତ୍ରା କଲା । ରାଜଧାନୀରେ ପହଞ୍ଚି ସେ ରାଜାଙ୍କ ସଙ୍ଗେ ଦେଖା କରିବାକୁ ଚାହିଁବାରୁ ପ୍ରହରୀ ତାକୁ କୌଣସି ରାଜପୁତ୍ର ମନେକରି ରାଜାଙ୍କ ପାଖକୁ ନେଇଗଲା ।

ଏତେଦିନ ପରେ ଦୁଇଭାଇଙ୍କର ମିଳନ ହେଲା । କି ଅପୂର୍ବ ସେ ଦୃଶ୍ୟ ! ଉଭୟେ କିଛିକ୍ଷଣ ପରସ୍ପରକୁ ଚାହିଁରହିଲେ । ବସନ୍ତ ପ୍ରଥମେ କହିଲା, "ଭାଇ, ମତେ ଚିହ୍ନିପାରୁନାହିଁ ?" ହେମନ୍ତ ସିଂହାସନରୁ ଉଠିଆସି ତାକୁ କୁଣ୍ଢାଇ ପକାଇ କହିଲା, "ବସନ୍ତ, ଆଜି କି ସୁଦିନ ମୋର, ତତେ ଦେଖିଲି ! ମୁଁ କିପରି ଯେ ତତେ ଭୁଲିଯାଇଥିଲି ଭାବିପାରୁନାହିଁ ।"

ତାପରେ ଦୁଇ ଭାଇ ନିଜ ନିଜର କଥା କହିଲେ । ବସନ୍ତର କଥା ଶୁଣି ହେମନ୍ତ ଆଶ୍ଚର୍ଯ୍ୟ ହୋଇଗଲା । କହିଲା, "ଆଉ କି ଯୁଦ୍ଧ ? ତୋ ବିବାହପରେ ତ ସବୁ ରାଜପୁତ୍ର ବନ୍ଦୀ ଖଲାସ ହେବେ ।" ସାଙ୍ଗେ ସାଙ୍ଗେ ବସନ୍ତର ବିବାହପାଇଁ ସେ ପ୍ରସ୍ତୁତ ହେଲା । ସ୍ଥିର ହେଲା ତା ପର-ଦିନ ଭବାନୀନଗରର ମନ୍ତ୍ରୀ ବସନ୍ତକୁ ଶୋଭାଯାତ୍ରାରେ ନେଇ ରୂପନଗର ଯିବେ ।

ରୂପନଗରର ରାଜା ସମସ୍ତ ଘଟଣା ଶୁଣି ଆନନ୍ଦରେ କନ୍ୟାର ବିବାହ ଆୟୋଜନରେ ଲାଗିପଡ଼ିଲେ । ଖୁବ୍ ଆଡ଼ମ୍ବରରେ ବସନ୍ତ ସଙ୍ଗେ ବାସନ୍ତୀର ବିବାହ ସମ୍ପନ୍ନ ହେଲା । ବିବାହଶେଷରେ ରାଜକନ୍ୟା ବେଶଭୂଷା ହୋଇ ଯେତେବେଳେ ପତିଗୃହକୁ ବାହାରିଲା, ସେତେବେଳେ ଏକ ଅଦ୍ଭୁତ ଘଟଣା ଘଟିଲା । ତାର ପୋଷା ଶୁଆଟି ଗୋଟିଏ ବୟସ୍କା ନାରୀରୂପ ଧରି ବାସନ୍ତୀକୁ ଏକାନ୍ତରେ କହିଲା, " ମୁଁ ଦିନେ ଜଣେ ରାଣୀ ଥିଲି । ମୋ ନାଁ ଦୁର୍ଲଭା । ହେମନ୍ତ ଓ ବସନ୍ତ ମୋର ଦୁଇ ପୁଅ । ତେଣୁ ତୁ ମୋର ବୋହୂ ହେଲୁ । ତୁମମାନଙ୍କୁ ଛାଡ଼ି ମୁଁ ରହିବି କିପରି ? ଆଗ ମୋର ପୂର୍ବ କଥା ଶୁଣ୍ । ତା ପରେ ତୁ ଯାହା ସ୍ଥିର କରିବୁ ।" ଦୁର୍ଲଭାଠାରୁ ତାର ପୂର୍ବ କାହାଣୀ ଶୁଣି ବାସନ୍ତୀ ଯେତିକି ଆଶ୍ଚର୍ଯ୍ୟ ହେଲା, ସେତିକି ଆନନ୍ଦିତ ହେଲା ଏବଂ ବସନ୍ତ ସହ ନ ଯାଇ ଗୋଟିଏ ଅଲଗା ସବାରିରେ ଦୁର୍ଲଭା ସହ ଯିବ ବୋଲି ବାପାଙ୍କୁ ଜଣାଇଲା ।

ତାହାହିଁ ହେଲା । ଭବାନୀନଗରରେ ଯେତେବେଳେ ହେମନ୍ତ ସେମାନଙ୍କୁ ଆଗେଇ ନେବାକୁ ଆସିଲା, ସେତିକିବେଳେ ବାସନ୍ତୀ ସବାରି ଖୋଲିଦେଲା । କି ଅପୂର୍ବ ଦୃଶ୍ୟ ସେତେବେଳେ ! ଦୁର୍ଲଭା ସବାରିରୁ ବାହାରିପଡ଼ି ଆଖି ଛଳଛଳ କରି କହିଲା, "ମୋ ପ୍ରାଣର ହେମନ୍ତ ଓ ବସନ୍ତ ! ଆଜିଯାଏ କେଉଁଠି ଥିଲ ତୁମ୍ଭେମାନେ ? ମୋର କି ଭାଗ୍ୟ ଆଜି ତୁମମାନଙ୍କୁ ଦେଖିଲି । ବାସନ୍ତୀ ମୋର ସାକ୍ଷାତ୍ ଲକ୍ଷ୍ମୀଟିଏ । ତା'ରି ସ୍ନେହଆଦର ପାଇ ମୁଁ ଆଜିଯାଏ ବଞ୍ଚି ରହିଥିଲି । ଆଗ ଚାଲ ଠାକୁର ମନ୍ଦିରକୁ । ଏ ମଧୁର ମିଳନପାଇଁ ଈଶ୍ୱରଙ୍କୁ ଧନ୍ୟବାଦ ଦେବା ଓ ଆଶୀର୍ବାଦ ଭିକ୍ଷା କରିବା ।"

# ବୋତଲେ ବୁଦ୍ଧିର ମୂଲ୍ୟ

ଇଂଲଣ୍ଡର ଏକ ମଫସଲ ଗାଁରେ ଜଣେ ବିଧବା ବୁଢ଼ୀ ବାସ କରୁଥିଲା । ସେ ବିଚ ଗରିବ । ପର ଘରେ କାମଦାମ କରି ଚଳେ । ତାର ଗୋଟିଏ ମାତ୍ର ପୁଅ । ତା ନାଁ ଜନ୍ । ଜନ୍ ବଡ଼ ଅଳସୁଆ ଏବଂ ବୋକା । ଘରେ ବସି ବସି ସମୟ କଟାଏ । ତାକୁ ଯେତେବେଳେ କୋଡ଼ିଏ ବର୍ଷ ହେଲା, ତା ମାଆ ଦିନେ ତାକୁ ବିରକ୍ତ ହୋଇ କହିଲା, "ଜନ୍, ତୁ କେତେଦିନ ଏମିତି ବସି ବସି ଖାଇବୁ ? ଯା, କେଉଁଠି ମୂଲପାଡ ଲାଗି ଦି' ପଇସା ଆଣ୍ । ତା ନ ହେଲେ ଘରୁ ବାହାରି ଯା । ମୁଁ ଆଉ ଏ ବୟସରେ କାମ କରି ତତେ ପୋଷିପାରିବି ନାହିଁ ।"

ତା ପରଦିନ ଜନ୍ ବାଧ ହୋଇ କାମକୁ ବାହାରିଲା । ନିଜ ଗାଁରେ ତ ସମସ୍ତେ ତା ଗୁଣ ଜାଣିଥିଲେ; କିଏ ବା ତାକୁ କାମ ଦେବ ? ତେଣୁ ସେ ପାଖ ଗାଁକୁ ଯାଇ କାମ ଖୋଜିଲା । ଜଣେ ଲୋକ ତାକୁ ସେଦିନ ତା ବଗିଚାରୁ ଘାସ ସଫା କରିବାକୁ କହିଲା । କିନ୍ତୁ ସନ୍ଧ୍ୟାବେଳେ ଆସି ଦେଖିଲାବେଳକୁ ଜନ୍ ଘାସ ସାଙ୍ଗରେ କେତୋଟି ଫୁଲଗଛ ମଧ୍ୟ ଉପାଡ଼ିଦେଇଛି । ତେଣୁ ସେ ତାକୁ କିଛି ମୂଲପାଡ ନ ଦେଇ ସେମିତି ବିଦା କରିଦେବାକୁ ଯାଉଥିଲା; ମାତ୍ର ତାର ସ୍ତ୍ରୀ ଦୟା କରି ଗୋଟିଏ ପାଉଁରୁଟି ଆଣି ଜନ୍ ହାତରେ ଦେଲା ।

ଜନ୍ ପାଉଁରୁଟିଖଣ୍ଡି ଧରି ଘରକୁ ଫେରିଲା । ବାଟରେ ବାହାଦୁରି ଦେଖାଇବା ପାଇଁ ରୁଟିକୁ ମୁଣ୍ଡଉପରେ ରଖି ଦୁଇହାତ ତଳକୁ ଝୁଲାଇ ନବାବଙ୍କ ପରି ଚାଲୁଥାଏ । ଗୋଟାଏ ଚିଲ କୁଆଡ଼ୁ ଆସି ରୁଟିଟାକୁ ଝାମ୍ପି ନେଇଗଲା । ଜନ୍‌ର ଆଉ ଉପାୟ କଣ ? ତା ମାଆ ଏ କଥା ଶୁଣି ତାକୁ କହିଲା, "ହାତରେ ରଖିବା ଜିନିଷକୁ ମୁଣ୍ଡରେ ରଖିଥିଲୁ କାହିଁକି ? ଏଥିପାଇଁ ତତେ ସମସ୍ତେ କହନ୍ତି ବୋକା । ଏଣିକି ହାତରେ ଧରି ଆଣିବୁ । ଚିଲ କଣ ହାତରୁ ସହଜରେ ନେଇପାରିଥାନ୍ତା ?"

ତା ପରଦିନ ଜନ୍ ଯାହା ଘରେ କାମ କଲା, ସେ ତାକୁ ପଇସା ଆକାରରେ ମୂଲ ଦେଲା । ଜନ୍ ହାତରେ ପଇସା ଧରି ଆସୁ ଆସୁ ବାଟରେ ଗୋଟାଏ ପୋଲ ପଡ଼ିଲା । ମାଙ୍କଡ଼ଟାଏ ପୋଲ ବାଡ଼ାରେ ବସିଥିଲା । ତାକୁ ତାଳିମାରି ହୁରୁଡ଼େଇଲାବେଳକୁ ପଇସାଯାକ ପାଣିରେ ପଡ଼ିଗଲା ।

ଜନ୍‌ର ମାଆ ସେ ଦିନ ମଧ୍ୟ ବିରକ୍ତ ହେଲା । କହିଲା, "ଏଥର ଯାହା ମୂଲ ପାଇବୁ, ପକେଟ୍‌ରେ ପୂରାଇ ଆଣିବୁ ।" ତା ପରଦିନ ଜନ୍ ଜଣେ ଗଉଡ଼ ଘରେ କାମ କଲା । ସେ ତାକୁ ମୂଲ ବାବଦକୁ ଠେକିଏ ଦୁଧ ଦେଲା । ଜନ୍ ଦୁଧ ଠେକି ଧରି ଆସୁଥିଲା । ମାତ୍ର ପୋଲ ପାଖରେ ତାର ମନେପଡ଼ିଲା ମାଆ କଥା । ତେଣୁ ସେ ଠେକିଟିକୁ ପକେଟରେ ପୂରାଇଲା । ଗାଁର ପିଲା-ମାନେ ଏହା ଦେଖି ହସୁଥାନ୍ତି, କିନ୍ତୁ ଜନ୍ କିଛି ଶୁଣୁ ନ ଥାଏ । ଘରେ ପହଞ୍ଚିଲାବେଳକୁ ଠେକି ଶୂନ୍ୟ ।

ଜନ୍‌ର ମାଆ ମୁଣ୍ଡରେ ହାତ ଦେଇ ବସିଲା । କହିଲା, "ବିଧାତା ତୋ ମୁଣ୍ଡରେ ଟିକିଏ ହେଲେ ବୁଦ୍ଧି ଦେଲା ନାହିଁ ? ମୁଁ ମଲା ପରେ ତୁ କେମିତି ଚଳିବୁ ?" ଜନ୍ କହିଲା, "ମା, ସମସ୍ତେ ଯାହା କହୁଛନ୍ତି, ତୁ ବି ସେଇଆ କହୁଛୁ ? କିନ୍ତୁ ମୁଁ କଣ କରିବି କହିଲୁ ? ମୋ ମୁଣ୍ଡକୁ ବୁଦ୍ଧି କେଉଁଠୁ ଆସିବ କହୁନୁ ?"



ଜନ୍‌ର ମା କହିଲା, "ମତେ ସେ କଥା ଜଣାଥିଲେ ତୁ କଣ ଏମିତି ନିର୍ବୁଦ୍ଧିଆ ହୋଇଥାନ୍ତୁ ? ଗାଁ ମୁଣ୍ଡରେ ଯେଉଁ ବୁଢ଼ା ଜ୍ୟୋତିଷ ଅଛନ୍ତି, ତାଙ୍କୁ ଯାଆ ପଚାରିବୁ । ସେ କେଜାଣି କହିପାରିବେ ।"

ଜନ୍ ବୁଢ଼ା ଜ୍ୟୋତିଷଙ୍କୁ ଦେଖା କରି ସବୁ କଥା ଜଣାଇଲା ଏବଂ ବୁଦ୍ଧି କେଉଁଠି ମିଳିବ ପଚାରିଲା । ସେ କହିଲେ, "ଏଇ ଯେଉଁ ପାହାଡ଼ ଦିଶୁଛି, ତାର ଏକ ଗୁମ୍ଫା ଭିତରେ ଘର କରି ଜଣେ ସ୍ତ୍ରୀ ଲୋକ ଅଛି । ସେ ଗୁଣିବିଦ୍ୟା ଜାଣେ । ତାକୁ ଦେଖା କର । ସେ ଅନୁଗ୍ରହ କଲେ ତୋର ବୁଦ୍ଧି ହେବ ।"

ଜନ୍ ଘରକୁ ଫେରି ମା ଆଗରେ ସେଇ କଥା କହିଲା ଏବଂ ପାହାଡ଼ ପାଖକୁ ଯିବାପାଇଁ ବାହାରିଲା । ତା ମା ତାକୁ ଖାଇବାକୁ ଦେଇସାରି କହିଲା, "ହୁସିଆର ହୋଇ ଯିବୁ । ଆଉ ଦେଖ୍, ଏଣୁ ତେଣୁ ଗୁଡ଼ାଏ ଗପି ତାଙ୍କୁ ବିରକ୍ତ କରିବୁ ନାହିଁ । ଗୁଣିଆମାନେ ବେଶି କଥା କହନ୍ତି ନାହିଁ ।"

ଜନ୍ ପାହାଡ଼ ପାଖକୁ ଯାଇ ଖୋଜି ଖୋଜି ଏକ ଗୁମ୍ଫା ଭିତରେ ସେ ସ୍ତ୍ରୀ ଲୋକକୁ ପାଇଲା । ଚୂଲିଉପରେ ହାଣ୍ଡିଟିଏ ବସେଇ ସେ କଣ ଘାଣ୍ଟୁଥାଏ । ଜନ୍ ତାକୁ ନମସ୍କାର କରି ଠିଆ ହେଲା । ସେ ମଧ୍ୟ ପ୍ରତିନମସ୍କାର ଜଣାଇ ତା କାମରେ ପୂର୍ବପରି ଲାଗିଲା । ଟିକିଏ ପରେ ଜନ୍ କହିଲା, "ପୂର୍ବ ପଟେ ଖଣ୍ଡେ ମେଘ ଦେଖାଯାଉଛି । ବୋଧହୁଏ ବର୍ଷା ହେବ ।" ଗୁଣିଆଣୀ କହିଲା, "ହୋଇପାରେ ।" ଏତିକି କହି ସେ ପୁଣି ତା କାମରେ ଲାଗିଲେ ।

କିଛି ସମୟ ଚୁପ୍ ରହିବା ପରେ ଜନ୍ କହିଲା, "ତୁମେ ବୁଦ୍ଧି ବିକି କର କି ? ମୁଁ କିଛି ବୁଦ୍ଧି ନବାକୁ ଆସିଛି ।"

ଗୁଣିଆଣୀ କହିଲା, "କେଉଁଳି ବୁଦ୍ଧି ତୋର ଦରକାର ? ଯଦି ରଜା ବୁଦ୍ଧି, ମାଷ୍ଟର ବୁଦ୍ଧି କିମ୍ବା ସୈନିକବୁଦ୍ଧି ଖୋଜୁଥାଉ, ମୋ ପାଖରେ ସେ ଜିନିଷ ନାହିଁ ।" ଜନ୍ କହିଲା, "ମୋର ବୋଡଲେ ଖଣ୍ଡେ ସାଧାରଣ ବୁଦ୍ଧି ହେଲେ ଚଳିବ ।" "ତା ମୁଁ ଦେଇପାରେ । କିନ୍ତୁ ଗୋଟାଏ କାମ କରିବାକୁ ହେବ" ଗୁଣିଆଣୀ କହିଲା । କି କାମ କରିବାକୁ ହେବ ପଚାରିବାରୁ ସେ ପୁଣି କହିଲା, "ଯେ ତୋର ସବୁଠାରୁ ପ୍ରିୟ, ତାର କଲିଜା ମୋ ପାଖକୁ ନେଇଆ । ତାହେଲେ ମୁଁ ବୁଦ୍ଧି ଦେବି ।"



ବୋକା ଜନ୍ ପଚାରିଲା, "ମୋର ସବୁଠାରୁ ପ୍ରିୟ କିଏ ?"

ଗୁଣିଆଣୀ କହିଲା, "ସେ କଥା ତୁ ଜାଣିଥିବୁ । ମୁଁ କେମିତି ତାହା କହିପାରିବି ? ହଁ, ଆଉ ଗୋଟିଏ କଥା । କଲିଜା ଆଣିବା ପରେ ମୁଁ ତତେ ଗୋଟିଏ ଧନ୍ଦା ପ୍ରଶ୍ନ ପଚାରିବି । ତୁ ଠିକ୍ ଜିନିଷ ଆଣିଛୁ କି ନା, ତୋ ଉତ୍ତରରୁ ଜଣା ପଡ଼ିବ । ଏଥର ଯା ।"

ଜନ୍ ଘରକୁ ଫେରିଲା । ବାଟଯାକ ଖାଲି ଭାବୁଥାଏ—ମୋର ପ୍ରିୟ ଜିନିଷ କଣ । ଘୁଷୁରି ମାଂସ ତାକୁ ଖୁବ୍ ଭଲ ଲାଗେ । ତେଣୁ ସେ ତାର ମା'କୁ କହିଲା, "ମା, ମୁଁ ଭାବୁଛି ଆମର ଯେଉଁ ମୋଟା ଘୁଷୁରିଟା ଅଛି, ତାକୁ ମାରି ତା'ର କଲିଜା ନେଇ ସେ ଗୁଣିଆଣୀକୁ ଦେବି; କାରଣ ସେ ମୋର ସବୁଠାରୁ ବଳି ପ୍ରିୟ ।"

ଜନ୍‌ର ମା ଖୁବ୍ ଯତ୍ନରେ ସେ ଘୁଷୁରିକୁ ପାଳିଥିଲା । ହେଲେ କଣ ହେବ, ପୁଅର ବୁଦ୍ଧି ତୁଳନାରେ ଘୁଷୁରୀଟା କିଛି ନୁହେଁ । ସେ କହିଲା, "ତୁ ଯାହା କରୁଛୁ କର୍ ପଛେ, କିଛି ବୁଦ୍ଧି ସେ କୌଣସି ପ୍ରକାରେ ଯୋଗାଡ଼ କରି ଆଣ ।"

ତା ପରଦିନ ଘୁଷୁରୀଟାକୁ ମାରି, ତା କଲିଜାକୁ ଖଣ୍ଡେ ଟଭରରେ ଗୁଡ଼େଇ

ଜନ୍ ପହଞ୍ଚିଲା ସେ ଗୁଣିଆଣୀ ପାଖରେ । ଜନ୍‌ଠାରୁ ସବୁ ଶୁଣି ସେ କହିଲା, "ଠିକ୍ ଅଛି । ଏଥର ମୋ ପ୍ରଶ୍ନର ଉତ୍ତର ଦେ । ଗୋଡ଼ ନ ଥାଇ କଏ ଦୌଡ଼େ ?"

ଜନ୍ ଠିଆ ହୋଇ ଖାଲି ତା ମୁଣ୍ଡକୁ କୁଣ୍ଡାଉଥାଏ । ତାକୁ କୌଣସି ଉତ୍ତର ପଇଟିଲା ନାହିଁ । ଗୁଣିଆଣୀ କହିଲା, "ଏଥିରୁ ଜଣାଯାଉଛି ତୁ ଠିକ୍ ଜିନିଷ ବାଛି କରି ଆଣିନାହୁଁ । ଆଜି ବୁଦ୍ଧି ମିଳିବ ନାହିଁ, ଯା ।"

ନିରାଶ ମନରେ ଜନ୍ ଘରକୁ ଫେରିଲା । ଘରେ ପାଦ ନ ଦେଉଣୁ ସେ ଶୁଣିଲା ତା ମା ମରିଯାଇଛି । ତା ମୁଣ୍ଡରେ ସତେ କି ବଜ୍ର ପଡ଼ିଲା । ଏ ସଂସାରରେ ସେଇ ଜଣକ ଥିଲା ତା ନିଜର । ସମସ୍ତେ ତାକୁ ଦୂର୍ ଦୂର୍ କରନ୍ତି, କିନ୍ତୁ ସେଇ ମା ତାକୁ ଆଜିପର୍ଯ୍ୟନ୍ତ ସ୍ନେହରେ ପାଳି ଆସିଥିଲା । ତା ପାଇଁ କେତେ କଷ୍ଟ ନ ସହିଛି ସେ ! ସାଇ ପଡ଼ଶା ଆସି ଜନ୍‌କୁ ବୁଝାବୁଝି କଲେ । ମା'ର ଶବପାଖରେ ବସି ସେ ଭାବୁଥାଏ ଏଣିକି କେମିତି ଏକୁଟିଆ ଚଳିବ । ଏତିକି-ବେଳେ ତାର ଖିଆଲ ହେଲା ଗୁଣିଆଣୀ କଥା । ସେ ଭାବିଲା ମା'କୁ ଗୋଟାସୁଦ୍ଧା ନେଇ ତା ପାଖରେ ଥୋଇଦେବ, କାରଣ ତାର ସବୁଠାରୁ ପ୍ରିୟ ଥିଲା ସେଇ ମାଆ ।

ମାଆର ଶବକୁ ଧରି ସେ ପହଞ୍ଚିଲା ପାହାଡ଼ ଗୁମ୍ଫାରେ । ଗୁଣିଆଣୀକୁ କହିଲା, "ଏଇଥର ମୁଁ ଠିକ୍ ଜିନିଷ ଆଣିଛି ।" ଗୁଣିଆଣୀ ବେଶି କିଛି ନ କହି ପଦେ କେବଳ କହିଲା, "ଆଣିଥିବୁ; କିନ୍ତୁ ମୋର ଧନ୍ଦାର ଉତ୍ତର ଦେ । ସୁନା ନୁହେଁ; ଅଥଚ ଖୁବ୍ ଉଜ୍ଜ୍ୱଳ ଓ ହଳଦିଆ ଦିଶେ । ସେ ଜିନିଷଟି କିଏ ?"

ଜନ୍ କିଛି ନ କହି କେବଳ ଠିଆ ହୋଇ ମୁଣ୍ଡ କୁଣ୍ଡାଉଥାଏ । "ମାଆକୁ ନେଇଯା, କବର ଦେବୁରେ ବୋକା, ଠିଆ ହୋଇଛୁ କାହିଁକି ? ତୁ ତ ମୋ ପ୍ରଶ୍ନର ଉତ୍ତର ଦେଇପାରିଲୁ ନାହିଁ । ତୁ ଠିକ୍ ଜିନିଷ ଆଣିଛୁ ବୋଲି ମୁଁ ବିଶ୍ୱାସ କରିବି କେମିତି ? ଠିକ୍ ଜିନିଷ ଆଣିଲେ ବୁଦ୍ଧି ଦେବି, ଯା ।" ଏହା କହି ଗୁଣିଆଣୀ ଘରକୁ ପଶିଯାଇ ଗୁମ୍ଫାର କବାଟ କିଳିଦେଲା ।

ଘୁଷୁରି ଗଲା, ମାଆ ମଲା, ତଥାପି ବୋଡ଼ଲେ ବୁଦ୍ଧି ମିଳିଲା ନାହିଁ । କର୍ମ ଆଦରି ଜନ୍ ମାଆର ଶବକୁ ଧରି ଗୋଟାଏ ପଡ଼ିଆକୁ ଗଲା । ଏକା ଏକା କୋଦାଳ ସାହାଯ୍ୟରେ

ଗାଡ଼ ଖୋଳି ତାକୁ ସେଠାରେ କବର ଦେଲା। ଘରକୁ ଫେରିବା ବାଟରେ ଗୋଟାଏ ଗାଉଁଲି ଝିଅ ସଙ୍ଗେ ତାର ଭେଟ ହେଲା। ତା ନାଁ ମେରି। ସେ ଜନ୍‌କୁ ଆଗରୁ ଜାଣିଥିଲା। କଥାବାର୍ତ୍ତା ହେଉଁ ହେଉଁ ଜନ୍ ତାକୁ ନିଜର ଦୁଃଖ କାହାଣୀ କହିଲା। "ଘୁଷରି ଗଲା, ମାଆ ମଲା, ମୁଁ ଏଣିକି ଚଳିବି କେମିତି ? ମୋ କଥା ବୁଝିବ କିଏ ? ଯାହା ତ ହେଲା ହେଲା। ବୋତଲେ ବୁଦ୍ଧି ଭଲା ମିଳିଥାନ୍ତା ! ମୁଁ ଏତେ କଷ୍ଟ କଲିଣି, କିନ୍ତୁ କୌଣସି ଫଳ ହେଲା ନାହିଁ।"

ମେରି ଜାଣିଥିଲା ଜନ୍‌ଟା ନିପଟ ବୋକା। ତଥାପି ତା ଶେଷ କଥା ପଦକର ଅର୍ଥ କିଛି ବୁଝି ନ ପାରି ପଚାରିଲା, "ବୁଦ୍ଧି କେଉଁଠୁ ମିଳିଥାନ୍ତା ?" ଜନ୍ ସେ ଗୁଣିଆଣୀ ପ୍ରଶ୍ନର ଉତ୍ତର ଦେଇ ନ ପାରି କିପରି ସର୍ବସ୍ୱାନ୍ତ ହୋଇଛି ସେ କଥା ବର୍ଣ୍ଣନା କଲା ଏବଂ କାନ୍ଦି କାନ୍ଦି କହିଲା, "ମତେ ଏଥର ଚଳେଇବ କିଏ ? ସମସ୍ତେ ତ ଜାଣନ୍ତି ମୁଁ ନିର୍ବୁଦ୍ଧିଆ, ବୋକା।"

ମେରି କହିଲା, "ମୁଁ ତୁମକୁ ଚଳେଇବି। ମତେ ବାହା ହବ କି ? ଲୋକେ କହନ୍ତି ବୋକାଙ୍କୁ ବାହା ହେଲେ ଭଲ। ଅଶାନ୍ତି ଭୋଗିବାକୁ ପଡ଼େନାହିଁ।"



ଜନ୍ ମୁହଁରେ ହର୍ଷ ଫୁଟି ଉଠିଲା। ସେ କହିଲା, "ସତ କହୁଚ ? ତୁମେ ମତେ ବାହା ହବ। ଆଚ୍ଛା, ତୁମକୁ ରନ୍ଧାବଢ଼ା ଆସେ ? ଘର ଓଳେଇବା, ବାସନ ଧୋଇବା, ପାଣି ଆଣିବା—ଏ କାମସବୁ ଆସେ ?"

"ମତେ ସବୁ ଆସେ।" ମେରୀ ଉତ୍ତର ଦେଲା। ମେରୀର କଥା ଶୁଣି ଜନ୍ ତାର ସବୁ ଦୁଃଖ ଭୁଲିଗଲା ଏବଂ ତାକୁ ବାହା ହେବାପାଇଁ ନିଜର ସମ୍ମତି ଜଣାଇଦେଲା।

ଏହାପରେ ଗାଁର ଗୀର୍ଜାଘରଠାରେ ସେ ଦୁହିଁଙ୍କର ବିବାହ କାର୍ଯ୍ୟ ସମ୍ପନ୍ନ ହେଲା । ମେଗ୍ ଗରିବ ଘରର ଝିଅ ହେଲେ କଣ ହେବ, ସହିଷ୍ଣୁ ଏବଂ ବୁଦ୍ଧିମତୀ । ବୋକା ଜନ୍‌କୁ ନେଇ ସେ ଖୁବ୍ ସୁଖରେ ତାର ସଂସାର ଚଳେଇଲା । ଘରର କାମଦାମ କରି ଏବଂ ସ୍ୱାମୀର କଥା ବୁଝି ସେ ଆନନ୍ଦରେ ଥାଏ ।

ଦିନେ ବୋକା ଜନ୍‌ର ପୂର୍ବ କଥା ମନେ ପଡ଼ିଲା । ସେ ତାର ସ୍ତ୍ରୀକୁ କହିଲା, "ମେଗ୍, ଆଜିଯାଏ ମୋର ଗୋଟାଏ କଥା ଖିଆଲ ନ ଥିଲା । ମୁଁ ତୁମକୁ ସବୁଠାରୁ ବେଶି ଭଲ ପାଏ । ସବୁତ ତୁମକୁ ମାରି ତୁମ କଲିଜା ନେଇ ଗୁଣିଆଣୀକୁ ଦେବି । ତାହା ହେଲେ ସେ ମତେ ବୋଡଲେ ବୁଦ୍ଧି ଦିଅନ୍ତା ।"

ମେଗ୍ କହିଲା, "ସେ କାମ କେବେଁ କରିବ ନାହିଁଟି । ମତେ ମାରିଦେଲେ ତା ଧନ୍ଦାପ୍ରଶ୍ନର ଉତ୍ତର ଦେବ କିଏ ? ମୋ କଲିଜାସହିତେ ମତେ ଗୋଟାସୁଦ୍ଧା ସେଠାକୁ ନେଇଯାଅ । ତା ପରେ କଣ ହେବ, ଦେଖିବ ।"

ଜନ୍ ତା କଥାକୁ ବିଶ୍ୱାସ କରିପାରିଲା ନାହିଁ । କହିଲା; "ଭାରି କଠିନ ପ୍ରଶ୍ନ ସେ ପଚାରେ । ମୁଁ ପୁରୁଷ ଲୋକ ହୋଇ ଯେଉଁଠି ଉତ୍ତର ଦେଇ ପାରିଲି ନାହିଁ, ତୁମେ ସ୍ତ୍ରୀ ଲୋକ ହୋଇ କଣ ପାରିବ ?" ମେଗ୍ ନିର୍ଭର ସାହସ ଦେବାରୁ ସେ ସ୍ଥିର କଲା ତା ପରଦିନ ସକାଳୁ ସ୍ତ୍ରୀକୁ ସାଙ୍ଗରେ ନେଇ ପାହାଡ଼ ଗୁମ୍ଫାକୁ ଯିବ ।

ଜନ୍ ଓ ମେଗ୍ ଯେତେବେଳେ ଗୁମ୍ଫାଦ୍ୱାରରେ ପହଞ୍ଚିଲେ, ଗୁଣିଆଣୀ ବସି ଦଉଡ଼ି ବଳୁଥିଲା । ତାକୁ ନମସ୍କାର ଜଣାଇ ଜନ୍ କହିଲା, "ମୁଁ ଏଇଥର ମୋର ପ୍ରିୟତମ ପଦାର୍ଥକୁ ଆଣିଛି ।" ଏହା କହି ସେ ମେଗ୍ ଆଡ଼କୁ ହାତ ବଢ଼ାଇ ଦେଖାଇଦେଲା ।

ଗୁଣିଆଣୀ ପ୍ରଶ୍ନ କଲା, "କହ ଦେଖେ, ଗୋଡ଼ ନ ଥାଇ କିଏ ଦୌଡ଼େ ?", ବୋକା ଚାହିଁଲା ସ୍ତ୍ରୀ ଆଡ଼କୁ । ମେଗ୍ ତା କାନରେ ଚୁପ୍ ଚୁପ୍ ଉତ୍ତର କହିଦେଲା । ଜନ୍ କହିଲା, "ପାଣି" ।

"ସୁନା ନୁହେଁ, ଅଥଚ ଖୁବ୍ ଉଜ୍ଜ୍ୱଳ ଓ ହଳଦିଆ ଦିଶେ—କଅଣ ?" ଏଥର ମଧ୍ୟ ସ୍ତ୍ରୀଠାରୁ ଶୁଣି ଜନ୍ ଉତ୍ତର ଦେଲା—"ସୂର୍ଯ୍ୟ" ।

ଗୁଣିଆଣୀ ଦୁହିଁଙ୍କ ଆଡ଼କୁ ଚାହିଁ କହିଲା, "ଆଉ ଗୋଟିଏ ପ୍ରଶ୍ନ ପଚାରିବି । କାହାର ପ୍ରଥମେ ଗୋଡ଼ ନ ଥାଏ, ତାପରେ ଦୁଇ ଗୋଡ଼ ଏବଂ ଶେଷରେ ଚାରି ଗୋଡ଼ ବାହାରେ ?"



ବୋକା ପୁଣି ଚାହିଁଲା ମେଘ ଆଡ଼କୁ ଏବଂ ତାଠାରୁ ଉତ୍ତର ଶୁଣିନେଇ କହିଲା––‘ବେଙ୍ଗଫୁଲ’ ।

ଗୁଣିଆଣୀ ହସିଲା । କହିଲା, “ତୋ ଉତ୍ତର ଠିକ୍ ଅଛି । ତୁ ବୁଦ୍ଧି ବୋତଲକ ପାଇ ସାରିଲୁଣି । ଏଥର ଘରକୁ ଯା ।”

ବୋକା ଜନ୍ ତାର ପକେଟ ଦୁଇଟା ଅଣ୍ଡାଳି ପକାଇ କହିଲା, “କାହିଁ ? ନାହିଁ ତ । ତୁମେ ମତେ ଠକି ଦବାକୁ ବସିଛ ।”

ଗୁଣିଆଣୀ କହିଲା, “ବୁଦ୍ଧି ତୋ ସ୍ତ୍ରୀର ମୁଣ୍ଡଭିତରେ ଅଛି । ସେ ତୋ ପାଖରେ ଥିବା ଯାଏ ତତେ କେହି ଠକି ପାରିବେ ନାହିଁ । ନିର୍ବୁଦ୍ଧିଆ ଲୋକ ଯଦି ବୁଦ୍ଧିମତୀ ସ୍ତ୍ରୀଟିଏ ପାଏ, ତେବେ ତାର କୌଣସି ଅସୁବିଧା ହୁଏ ନାହିଁ । ସେ ସବୁ ଚଳେଇ ନିଏ । ତୁ ସେଇଭଳି ସ୍ତ୍ରୀଟିଏ ପାଇଛୁ । ଦେଖିଲୁ ତ ସେ ତତେ ଆଜି କିପରି ସାହାଯ୍ୟ କଲା । ଏଥର ଘରକୁ ଯାଇ ଆନନ୍ଦରେ ରହ । ସେ ବୁଦ୍ଧି ଦବ, ତୁ କାମ କରିବୁ ।”

ବୋକା ଜନ୍ ବୁଦ୍ଧିମତୀ ମେଘକୁ ସାଙ୍ଗରେ ନେଇ ଘରକୁ ଫେରିଲା । ପରସ୍ପରକୁ ସାହାଯ୍ୟ କରି ସେମାନେ ସୁଖରେ ରହିଲେ ।

# ସମୁଦ୍ର ଝଡ଼ର କୁଣ୍ଢେଇ ଖେଳ

୧୪୯୨ ଖ୍ରୀଷ୍ଟାବ୍ଦରେ କଲମ୍ବସ୍ ତିନିଖଣ୍ଡ ପାଲ୍‌ଟଣା ଜାହାଜ ଧରି ଆଟଲାଣ୍ଟିକ ମହାସାଗର ପାର ହୋଇ ଆମେରିକାରେ ପହଞ୍ଚିପାରିଥିଲେ । ଏଥିପାଇଁ ତାଙ୍କୁ ନଅ ସପ୍ତାହ ସମୟ ଲାଗିଥିଲା । ସେତେବେଳର ଅବସ୍ଥା ଅବଶ୍ୟ ଆଜିକାଲି ନାହିଁ, ବହୁତ ବଦଳି ଯାଇଛି । ଷ୍ଟୀମ୍ ଇଂଜିନ୍, ବାରୋମିଟର, ଉଡ଼ାଜାହାଜ, ରେଡ଼ିଓ, ରାଡାର, କମ୍ପ୍ୟୁଟର ପ୍ରଭୃତି ଯନ୍ତ୍ରର ଉଦ୍ଭାବନ ଫଳରେ ସମୁଦ୍ରଯାତ୍ରା ଅଧିକ ଦ୍ରୁତ ଓ ନିରାପଦ ହେଲାଣି । ତଥାପି ବେଳେବେଳେ ଜାହାଜ ଯେ ସମୁଦ୍ରରେ ନ ବୁଡ଼ୁଛି, ତା ନୁହେଁ ; କିନ୍ତୁ ବିପନ୍ନ ଜାହାଜର ଲୋକମାନଙ୍କୁ ଉଦ୍ଧାର କରିବାପାଇଁ ଆଜିକାଲି ଯେଉଁ ଅକ୍ଲାନ୍ତ ଚେଷ୍ଟା ଚାଲିଛି, ତାହା ଭାବିଲେ ଆଶ୍ଚର୍ଯ୍ୟ ଲାଗେ । ନିଶ୍ଚିତ ମୃତ୍ୟୁମୁଖରୁ ଷ୍ଟୀନ୍ ଗାବ୍ରିଏଲ୍‌ସେନ୍‌ଙ୍କ ଉଦ୍ଧାର ଏହିପରି ଏକ ବିସ୍ମୟକର କାହାଣୀ ।

୧୯୭୩ ମାର୍ଚ୍ଚ ୨୧ ତାରିଖର ସନ୍ଧ୍ୟା । ନରୱେର ଗୋଟିଏ କୋଇଲାବୋଝେଇ ଜାହାଜ ଯୁକ୍ତରାଷ୍ଟ୍ର ଆମେରିକାର ଏକ ବନ୍ଦରରୁ ଇଉରୋପ ଅଭିମୁଖରେ ବାହାରିଲା । ସେଦିନ ପାଗ ଆଦୌ ଭଲ ନ ଥାଏ । ପୂର୍ବରୁ ଅବଶ୍ୟ ସେଇଭଳି ପାଗରେ କ୍ୟାପ୍‌ଟେନ୍ ହାରସେମ୍ କେତେଥର ଜାହାଜ ଚଳାଇଥିଲେ ; ତେଣୁ ଖରାପ ପାଗ ଯୋଗୁ ବନ୍ଦରରେ ଅଟକି ରହିବାର ପ୍ରଶ୍ନ ତାଙ୍କ ମନରେ ଉଠି ନ ଥିଲା ।

୨୩ ବର୍ଷର ଯୁବକ ମେକାନିକ୍ ଷ୍ଟୀନ୍‌ଙ୍କୁ ମିଶାଇ ୨୯ ଜଣ ନାବିକ ଓ କର୍ମଚାରୀ ସେ ଜାହାଜରେ ଥିଲେ । ୨୨ ତାରିଖ ସକାଳକୁ ପବନର ବେଗ କ୍ରମେ ବଢ଼ୁଥିବାର ଦେଖାଗଲା । ସେଦିନ ୧୦ଟା ବେଳେ ଗୋଟାଏ ପ୍ରକାଣ୍ଡ ଢେଉ ଏତେ ଜୋରରେ ଜାହାଜର ଆଗ ମୁଣ୍ଡରେ ପିଟି ହୋଇଗଲା ଯେ ସାମ୍ନା କୋଇଲାଘରେ ପାଣି ପଶିଗଲା । ପମ୍ପ୍ ସାହାଯ୍ୟରେ ପାଣି ବାହାର କରିବାକୁ ଆଦେଶ ଦେଇ କ୍ୟାପ୍‌ଟେନ୍ ସ୍ଥିର କଲେ ଜାହାଜକୁ ଫେରାଇନେବେ ଏବଂ ବନ୍ଦରରେ ଆବଶ୍ୟକ ମରାମତି କରିସାରି ପବନ କମିଗଲେ ଛାଡ଼ିବେ ।



କିନ୍ତୁ ବନ୍ଦରକୁ ଫେରିବା ଏତେ ସହଜ ନ ଥିଲା । ଢେଉ ପରେ ଢେଉ ପର୍ବତ ପରି ମାଡ଼ି ଆସି ଜାହାଜରେ ପିଟି ହେଲା ଏବଂ ଝଡ଼ର ବେଗ ବେଳକୁବେଳ ବଢ଼ିବାରେ ଲାଗିଲା । କ୍ରମାଗତ ପାଣି ପଶିବା ଫଳରେ ପ୍ରାୟ ଘଣ୍ଟାକ ପରେ ଜାହାଜ ଆଗପଟକୁ ଅଣ୍ଡେଇ ହୋଇ-ପଡ଼ିଲା । ବିପଦ ଆଶଙ୍କା କରି ରେଡ଼ିଓ ଅଫିସର୍ ଉପକୂଳ ପ୍ରହରୀ କେନ୍ଦ୍ରକୁ ସାହାଯ୍ୟ ପଠାଇବା ପାଇଁ ଖବର ଦେଲେ । ଅପରାହ୍ଣ ୧ ଘଣ୍ଟା ୪୫ ମିନିଟ୍‌ରେ ଜୀବନ-ଡଙ୍ଗା ଖସାଇବାର ଇଙ୍ଗି ଦିଆଗଲା, କିନ୍ତୁ ନାବିକମାନେ ସେଥିପାଇଁ ପ୍ରସ୍ତୁତ ହେଉଁ ହେଉଁ ଜାହାଜଟା ଅସମ୍ଭବଭାବେ ଟଳମଳ ହେଉଥିବାର ଦେଖି କାପ୍‌ଟେନ୍ କହିଲେ, "ଜୀବନ-ଭେଳାଗୁଡ଼ିକ ଶୀଘ୍ର ପାଣିକୁ ଫିଙ୍ଗିଦେଇ ସମସ୍ତେ ଡେଇଁପଡ଼ । ଉପକୂଳ ପ୍ରହରୀ ଆସି ତୁମକୁ ଉଠାଇନେବେ ।" କାପ୍‌ଟେନ୍‌ଙ୍କ କଥା ସରିଛି କି ନାହିଁ, ଦୁଇଟା ପ୍ରକାଣ୍ଡ ଢେଉ ଜାହାଜ ଉପରକୁ ଚଢ଼ି ଆସିଲା । ଆଖି ପିଛୁଳାକେ ପିଲାଙ୍କ ଖେଳ କଣ୍ଢେଇ ପରି ତୋଫାନ ଓ ମହାସମୁଦ୍ରର କୋଳାକୋଳ ମଧ୍ୟରେ ଜାହାଜଟା ଅଦୃଶ୍ୟ ହୋଇଗଲା । କାପ୍‌ଟେନ୍ ଓ ନୌକର୍ମଚାରୀମାନେ ସେ ପ୍ରଳୟ ମନ୍ଥନ ଭିତରେ ସମୁଦ୍ରର କେଉଁ ଅତଳ ଗର୍ଭରେ ଲୁଚିଗଲେ ଜଣାପଡ଼ିଲା ନାହିଁ ।

ମେକାନିକ୍ ଷ୍ଟୀନ୍ ଭାବବେ ବୁଡ଼ନ୍ତା ଜାହାଜଟା ତାଙ୍କୁ ସମୁଦ୍ର ତଳକୁ ଟାଣିନେବ ; କିନ୍ତୁ ସୌଭାଗ୍ୟ କ୍ରମେ ପାଣିକୁ ଡେଇଁବା ପୂର୍ବରୁ ସେ ତାଙ୍କ ଜୀବନ-କୁର୍ତ୍ତାଖଣ୍ଡି (Life-jacket) ଦେହରେ ଗଳାଇ ଦେଇଥିଲେ ଏବଂ ସେଇ ଖଣ୍ଡିକ ତାଙ୍କୁ ଭସାଇ ରଖିଲା । କାଲୁଆ ପାଣିରେ ତାଙ୍କର ସର୍ବାଙ୍ଗ ଥରି ଉଠୁଥାଏ । ସମୁଦ୍ରର ନରମ ଗ୍ରଣ୍ଡ ଉପରେ ଗଭୀର ଶିଆରମାନ କାଟି ଚାଲିଥାଏ ପ୍ରବଳ ତୋଫାନ । ଷ୍ଟୀନ୍ ଯେତେବେଳେ ପନ୍ଦର ମିଟର ଉଚ୍ଚ ଢେଉର ଶିଖରକୁ ଉଠିଯାଉଥାନ୍ତି, ବହୁ କଷ୍ଟରେ ନିଃଶ୍ୱାସ ନେଇ ଦଣ୍ଡକପାଇଁ ଚାରିଆଡ଼େ ଟିକିଏ ଆଖି ବୁଲାଇ ନେଉଥାନ୍ତି । କାଳେ ସାଥୀମାନଙ୍କ ମଧ୍ୟରୁ କେହି ତାଙ୍କରି ପରି ଭେଳାକୁ ଧରି କେଉଁଠି ଭାସୁଥିବେ । ବିପଦବେଳେ ଜଣକୁ ଦି'ଜଣ ହେଲେ ମନରେ କେତେ ଦମ୍ଭ ଆସେ ! ଗୋଟାଏ ଭେଳା ତାଙ୍କ ଦୃଷ୍ଟିରେ ପଡ଼ିଲା । ଏଥିରେ ନିଶ୍ଚୟ ସାଙ୍ଗମାନେ ଥିବେ, ଏହି ଆଶା କରି ସେ ବହୁ କଷ୍ଟରେ ପହଁରି ପହଁରି ଯାଇ ସେ ଭେଳାଉପରକୁ ଉଠିପଡ଼ିଲେ । କିନ୍ତୁ ହାୟ ! ଭେଳାଟା ଯେ ଶୂନ୍ୟ !

କୋଇଲି ଜାହାଜର ବେତାର ଡାକ ଉପକୂଳ-ପ୍ରହରୀ କେନ୍ଦ୍ରରେ ଠିକ୍ ସମୟରେ ପହଞ୍ଚିଥିଲା ଏବଂ ଜାହାଜ ବୁଡ଼ିବା ପୂର୍ବରୁ ସେଠାରୁ ସାହାଯ୍ୟ-ତରୀ ଓ ଉଡ଼ାଜାହାଜମାନ ଦୁର୍ଘଟଣା ସ୍ଥଳକୁ ବାହାରି ଆସିଥିଲେ । ବରଫ-କଟା ଜାହାଜ ସବୁ ସମୁଦ୍ର ବକ୍ଷ ଖାଣ୍ଡିବାରେ ଲାଗିଥାନ୍ତି । ଝଡ଼ ବତାସ ନ ମାନି ଉଦ୍ଧାରକାରୀ ବିମାନଦଳ ଆକାଶରେ ଘୂରି ବୁଲୁଥାନ୍ତି, କିନ୍ତୁ ବିପନ୍ନ ଜାହାଜର କୌଣସି ଚିହ୍ନବର୍ଣ୍ଣ ଦେଖାଯାଉ ନ ଥାଏ ।

ଝଡ଼ର ପ୍ରଳୟଙ୍କ ଗର୍ଜନ ସଙ୍ଗେ ତାଳ ଦେଇ ସମୁଦ୍ରଟା ମାତାଲ ରାକ୍ଷସପରି ନାଚିବାରେ ଲାଗିଥାଏ । ଲୁଣି ପାଣିର ସହସ୍ର ଛିଟିକା ତୀରପରି ବାଜୁଥାଏ ଷ୍ଟୀନ୍‌ଙ୍କ ଦେହରେ । ଭେଳା ଉପରେ ବସି ସେ ଭାବୁଥାନ୍ତି—ଜାହାଜଟା ସିନା ବୁଡ଼ିଗଲା । ଆମେ ଯେଉଁ ଭେଳାଗୁଡ଼ାକ ସମୁଦ୍ରକୁ ଫିଙ୍ଗି ଦେଇଥିଲୁ , ସେଗୁଡ଼ାକ ତ ନିଶ୍ଚୟ ଭାସୁଥିବ ଏବଂ ତାଙ୍କ ସଙ୍ଗୀମାନେ କେଉଁଠି ହେଲେ ବଞ୍ଚି ରହିଥିବେ । ସେ ଏହିପରି ଭାବୁଥିଲାବେଳେ ଗୋଟାଏ ଢେଉର ଶକ୍ତ ଆଘାତରେ ତାଙ୍କ ଭେଳାଟି ଓଲଟି ପଡ଼ିଲା ଏବଂ ସେ ପୁଣି ଥରେ ଅସହାୟଭାବରେ ସମୁଦ୍ରରେ ଭାସିବାକୁ ଲାଗିଲେ ।

କିଛି ଦୂରରେ ଆଉ ଗୋଟିଏ ଶୂନ୍ୟ ଭେଳା ଭାସୁଥିବାର ସେ ଦେଖିପାରିଲେ । ବହୁ କଷ୍ଟରେ ପହଁରି ପହଁରି ଯାଇ ସେ ତା ଉପରକୁ ଉଠିଗଲେ ଏବଂ ସାଙ୍ଗେ ସାଙ୍ଗେ ତାଙ୍କ ବାଁ ହାତରେ ଭେଳାର ଦଉଡ଼ିଟିକୁ ଗୁଡ଼ାଇଦେଲେ । କିନ୍ତୁ ତାପରେ······ ?

ବେଳ ଆସି ବୁଡ଼ିବାଉପରେ ହେଲଣି । ରାତର ଅନ୍ଧକାର ଏଥର ମାଡ଼ିଆସିବ । ଏ ଭୟଙ୍କର ସ୍ଥାନରେ ତାଙ୍କ ଅବସ୍ଥା କଣ ହେବ ! ହତଭାଗ୍ୟ ଷ୍ଟୀନ୍ ! ସେ କଣ ଜାଣନ୍ତି ଯେ ଏହିପରି ଅନ୍ଧକାରରେ ତାଙ୍କୁ ତିନୋଟି ରାତି କଟାଇବାକୁ ପଡ଼ିବ ବୋଲି !

ଏତିକିବେଳେ ତାଙ୍କ କାନରେ ବାଜିଲା ଉଡ଼ାଜାହାଜର ଭୁଁ-ଭୁଁ ଶବ୍ଦ । ତାଙ୍କର ଦରମଲା ପିଣ୍ଡରେ ସତେ ଯେପରି ପ୍ରାଣ ସଞ୍ଚାର କଲା ସେ ! ଏ ନିଶ୍ଚୟ କୌଣସି ଉଦ୍ଧାରକାରୀ ବିମାନ ଆମ୍ଭମାନଙ୍କୁ ଖୋଜିବାକୁ ଆସିଛି । ଷ୍ଟୀନ୍ ଆଶାନ୍ୱିତ ହୋଇ ଭେଳାରେ ରଖାହୋଇ-ଥିବା ଗୋଟିଏ ରକେଟ୍ ବାହାର କରି ଆଣିଲେ ଏବଂ ତାର ବୋତାମ ଟିପି ଉପରକୁ ଛାଡ଼ିଲେ । କାଳେ ଆଲୁଅ ସଙ୍କେତରୁ ବିମାନ ତାଙ୍କୁ ଦେଖିପାରିବ, ଏହି ଆଶାରେ ସେ ଗୋଟିକ ପରେ ଗୋଟିଏ ରକେଟ୍ ଛାଡ଼ିଲେ । କିନ୍ତୁ ସବୁ ବୃଥା ହେଲା । ବିମାନର ଶବ୍ଦ କ୍ରମେ କ୍ଷୀଣରୁ କ୍ଷୀଣତର ହୋଇ ଦୂର ଆକାଶରେ ମିଳାଇଗଲା ।

ଷ୍ଟୀନ୍ ତାଙ୍କର ଏକମାତ୍ର ସହାୟ ସେ ଜୀବନ-ଭେଳାକୁ ଆଶ୍ରୟ କରି ଭାସୁଥାନ୍ତି । କିଛି ସମୟ ପରେ ସେ ଦେଖିପାରିଲେ ଏକ ଉଜ୍ଜ୍ୱଳ ଆଲୋକରେଖା ସମୁଦ୍ରଉପରେ ବୃତ୍ତା-କାରରେ ବୁଲି ବୁଲି କାହାକୁ ଯେପରି ଖୋଜିବାରେ ଲାଗିଛି । ପ୍ରାୟ ଅଧ କିଲୋମିଟର ଦୂରରେ ଥିବା ଏକ ଜାହାଜର ସର୍ଚ୍ଚଲାଇଟରୁ ସେହି ଆଲୋକ ଆସୁଥିଲା । ଏହା ଜାଣିପାରି ସେ ହାତ ହଲାଇ ଉଚ୍ଚ ସ୍ୱରରେ ଡାକ ଛାଡ଼ିଲେ, "ମୁଁ ଏଇଠି ଅଛି । ମତେ କଣ ଦେଖିପାରୁନାହଁ ?" କିନ୍ତୁ ତାଙ୍କର ସମସ୍ତ ଆକୁଳ ଚିତ୍କାର ବିଫଳ ହେଲା । ଟିକିଏ ପରେ ସେ ଜାହାଜଟା ଅନ୍ୟ-ଦିଗକୁ ମୁହଁ ବୁଲାଇ ଦେଇ ଚାଲିଗଲା । ଷ୍ଟୀନ୍‌ଙ୍କ ହତାଶ ହୃଦୟରେ ଆଶାର ଦୀପ ସେହି ସର୍ଚ୍ଚଲାଇଟର ଆଲୋକ ପରି ଅଳ୍ପକ୍ଷଣ ପାଇଁ ଜଳିଉଠି ପୁଣି ଲିଭିଗଲା ।

ରାତିର ଅନ୍ଧକାର ଭିତରେ ସେ ଅଶାନ୍ତ ସମୁଦ୍ରଉପରେ ଦୋହଲି ଦୋହଲି ଭେଳାଟା ଭାସୁଥାଏ । ଗଲା ରାତିଟାଯାକ ଷ୍ଟୀନ୍ ଅନିଦ୍ରାରେ କଟାଇଛନ୍ତି । ଆଜି ପୁଣି ଆଉ ଗୋଟାଏ ରାତି । ଏ ଅବସ୍ଥାରେ ଗୋଟାଏ ରାତି ଶହେଟା ରାତିପରି ଲାଗୁଥାଏ । ସେ କେବଳ ମନର ବଳରେ ବଞ୍ଚି ବସିଥାନ୍ତି । ଅନ୍ତତଃ ଉପକୂଳ-ପ୍ରହରୀ ଅମ ଜାହାଜର ଲୋକମାନଙ୍କୁ ଖୋଜାଖୋଜି କରୁଛନ୍ତି ତ ! ଦୁଇଟା ସୁଯୋଗ ଗଲାଣି । ଆଉ ନ ମିଳିବ ବୋଲି କିଏ କହିବ ? ଏଇ ଭରସାରେ ସେ ପୁଣି ଗୋଟାଏ ରାତି ଅନିଦ୍ରାରେ କଟାଇଲେ । ମାର୍ଚ୍ଚ ୨୩ ତାରିଖ ସକାଳକୁ ସେ ଦେଖିଲେ ତାଙ୍କ ପାଦ ଥଣ୍ଡାରେ ନେଳି ପଡ଼ିଆସିଲାଣି ।

ଗୋଡ଼ ଦୁଇଟା ପୂରା ଅଚଳ ହୋଇଯିବ ଭାବି ସେ ଭେଳା ବାହାରକୁ ଗୋଡ଼ କାଢ଼ି ପାଞ୍ଚସାତଥର ଘୁଞ୍ଚିବାକୁ ଲାଗିଲେ, ଟିକଏ ଉଷ୍ମ ଲାଗିଲା । ଥଣ୍ଡାରୁ ରକ୍ଷା ପାଇବାପାଇଁ ଖଣ୍ଡେ ଛିଣ୍ଡା କାନ୍‌ଭାସ୍ ଆଣି ଗୋଡ଼ ଦୁଇଟାରେ ଗୁଡ଼ାଇଦେଲେ ।

ଏହି ସମୟରେ ଗୋଟାଏ ପ୍ରକାଣ୍ଡ ଢେଉର ଆଘାତରେ ଭେଳାଟା ଓଲଟି ପଡ଼ିଲା ଏବଂ ଷ୍ଟିନ୍ ତା ତଳେ ଝୁଲିଲାପରି ରହିଗଲେ । କାନଭାସ୍‌ରେ ଗୁଡ଼ା ହୋଇଥିବା ଗୋଡ଼ ଦୁଇଟା ତାଙ୍କୁ ତଳକୁ ଟାଣୁଥାଏ । କିନ୍ତୁ ପ୍ରାଣମୂର୍ଚ୍ଛା ଚେଷ୍ଟା କରି ସେ ଭେଳାଟାକୁ କୌଣସିମତେ ପୂର୍ବ ଅବସ୍ଥାକୁ ଫେରାଆସିଲେ ।

ସେହିଦିନ ଉପରବେଳା ଷ୍ଟିନ୍‌ଙ୍କ ଅଗ୍ନି ପରୀକ୍ଷାର ଶେଷ ମୁହୂର୍ତ୍ତ ଆସିଲା । ପାଞ୍ଚମହଲା କୋଠା ଉଚ୍ଚର ଗୋଟାଏ ବିରାଟ ଢେଉ ମାଡ଼ି ଆସି ଯେତେବେଳେ ତାଙ୍କ ଉପରେ ଅଜାଡ଼ି ହୋଇପଡ଼ିଲା, ସେ ଆଉ ସମ୍ଭାଳି ପାରିଲେ ନାହିଁ । ତାଙ୍କ ଲାଇଫ୍ ଜାକେଟ୍‌ଟି ଦେହରୁ ଅଲଗା ହୋଇ କୁଆଡ଼େ ଭାସିଗଲା ଏବଂ ହାତରେ ବନ୍ଧାଥିବା ଭେଳାର ଦଉଡ଼ିଟି ମଧ୍ୟ ଛିଣ୍ଡିଗଲା । ଦଉଡ଼ି ଛିଡ଼ିଯିବାରୁ ଷ୍ଟିନ୍ ହତାଶ ହୋଇ ପଡ଼ିଲେ, କାରଣ ଏଇ ଭେଳାଯୋଗୁ ସେ ବୁଡ଼ି ନ ଯାଇ ଦୁଇଦିନ ହେଲା ବଞ୍ଚି ରହିଥିଲେ । ତେଣୁ ଶେଷ ବଳ ଖର୍ଚ୍ଚ କରି ସେ ପହଁରି ପହଁରି ଯାଇ ଭେଳାକୁ ପୁଣି ଧରିଲେ ଏବଂ ତା ଉପରକୁ ଉଠିଗଲେ ।



ଆଉ ଗୋଟିଏ କାଳ ରାତି ତାଙ୍କର କଟିଲା ସେ ସମୁଦ୍ର ଢେଉର ଦୋଳା ଉପରେ । ମାର୍ଚ୍ଚ ୨୪ ତାରିଖ ଦିନ ଝଡ଼ର ବେଗ କମି ଆସିଲା ଏବଂ ସମୁଦ୍ର ଟିକଏ ଶାନ୍ତ ହେଲା । ଷ୍ଟୀନ୍ ଚାରିଦିଗକୁ ଥରେ ଥରେ ଆଖି ବୁଲାଇ ଋବୁଥାନ୍ତି—କାହିଁ ? ଆଉ ତ କୌଣସି ଜାହାଜ ବା ବିମାନର ଦେଖା ନାହିଁ ? ଉପକୂଳ-ପ୍ରହରୀ ଉଦ୍ଧାରର ଉଦ୍ୟମ ବନ୍ଦ କରିଦେଲେ କି ? କିନ୍ତୁ ଉଦ୍ଧାର କାର୍ଯ୍ୟ ସେ ଦିନ ସକାଳସୁଦ୍ଧା ଜୋରସୋରରେ ଚାଲିଥିଲା । ଉପକୂଳ ପ୍ରହରୀ କେନ୍ଦ୍ରର କମ୍ପ୍ୟୁଟରର ଯନ୍ତ୍ର ଯେଉଁ ୩୨,୭୦୦ ବର୍ଗ କିଲୋମିଟରର ଅଞ୍ଚଳ ଖୋଜିବାପାଇଁ ସୂଚନା ଦେଇଥିଲା, ସେ ସବୁଆଡ଼ ଖୋଜସାରି ଜାହାଜ ଓ ବିମାନଦଳ ମୂଳ ଘାଟୀକୁ ଫେରିଆସିଲେ । କେବଳ ୫,୭୦୦ ବର୍ଗ କିଲୋମିଟରର ଜଳଭାଗ ସେମାନେ ଛାଡ଼ିଆସିଥିଲେ ଏବଂ ତା'ରି ଭିତରେ ରହିଯାଇଥିଲା ଷ୍ଟୀନ୍‌ଙ୍କ ଜୀବନ-ଭେଲାଟି ।

ରାତି ପାହି ସକାଳ ହେଲା । ଶାନ୍ତ ସମୁ ଦ୍ରବକ୍ଷରେ ଭେଳାରେ ବସି ବସି ଷ୍ଟୀନ୍ ଟିକଏ ଘୁମେଇ ପଡ଼ିଲେ । ସକାଳ ୯ଟା ବେଳକୁ ଗୋଟାଏ ଜେଟ୍ ବିମାନର ଶବ୍ଦରେ ତାଙ୍କ ନିଦ ଭାଙ୍ଗିଗଲା । କିନ୍ତୁ ନା, ତାଙ୍କ ଦଶା ଏବେ ସୁଦ୍ଧା ଫେରି ନ ଥିଲା । ଜେଟ୍ ବିମାନଟା ତାଙ୍କୁ ହତାଶ କରି ଦୂର ଆକାଶରେ ଅଦୃଶ୍ୟ ହୋଇଗଲା । ଷ୍ଟୀନ୍ ମନକୁ ମନ କହୁଥିଲେ, ''ଏଥର ବି ସେମାନେ ମତେ ଦେଖିପାରିଲେ ନାହିଁ ?''

ପ୍ରାୟ ତିନିଘଣ୍ଟା ଖୋଜାଖୋଜି କରିବାପରେ ବିମାନବାହିନୀର ଗୋଟିଏ ଉଡ଼ାଜାହାଜ ସେଠାରେ ଆସି ପହଞ୍ଚିଲା । ସହକାରୀ ପାଇଲଟ୍ ବାଲ୍ୟୁ ଦେଖିଲେ କମଳା ରଙ୍ଗର କଣ ଗୋଟାଏ ସମୁଦ୍ରରେ ଭାସୁଛି । ନିଶ୍ଚୟ ସେଇଟା ଜୀବନ-ଭେଲା ହୋଇଥିବ ଭାବି ସେ ଆଉ ଥରେ ନିରେଖି କରି ଋହିଁଲେ । ''ହେ ଭଗବାନ ! ଗୋଟାଏ ମଣିଷ ତା ଭିତରେ ଅଛି !'' ବାଲ୍ୟୁଙ୍କ ଚିତ୍କାର ଶୁଣି ତାଙ୍କର ସଙ୍ଗୀମାନେ ଧାଇଁଆସିଲେ ଦେଖିବାପାଇଁ । ପାଇଲଟ୍ ବିମାନକୁ ତଳକୁ ଖସାଇବାରୁ ଦେଖାଗଲା, ଲୋକଟା କେବଳ ବଞ୍ଚିନାହିଁ, ଭେଲାଉପରେ ହାତଗୋଡ଼ ହଲାଇ ନାଚୁଛି ! ଏ ଯେ କୋଇଲା ଜାହାଜର ଲୋକ, ସେ ବିଷୟରେ କାହାରି ସନ୍ଦେହ ରହିଲା ନାହିଁ ।

ଷ୍ଟୀନ୍‌ଙ୍କ ମନରେ ଦମ୍ଭ ଦେବାପାଇଁ ବାଲ୍ୟୁ କେତୋଟି ନିଆଁହୁଳା ତଳକୁ ପକାଇଲେ । ତାହା ଦେଖି ଷ୍ଟୀନ୍ ଜାଣିବେ ଯେ ବିମାନର ଲୋକମାନେ ତାଙ୍କୁ ଦେଖି ସାରିଲେଣି ଏବଂ ନିଶ୍ଚୟ ତାଙ୍କ ଉଦ୍ଧାରର ବ୍ୟବସ୍ଥା କରିବେ । ତା ଛଡ଼ା ଯେଉଁଠାରେ ଷ୍ଟୀନ୍‌ଙ୍କୁ ଠାବ କରାଗଲା, ସେହି ସ୍ଥାନର ଅବସ୍ଥିତି ମଧ୍ୟ ସେ ବେତାରବାର୍ତ୍ତା ଚାରିଆଡ଼କୁ ଜଣାଇଦେଲେ । ସଙ୍ଗେ ସଙ୍ଗେ ବିମାନରୁ

ଦୁଇଜଣ ବୁଡ଼ାଳ (Frog-men) ପ୍ଲାଷ୍ଟିକ୍ ମୁଣିରେ ଔଷଧ, କମ୍ବଳ ଓ ବେତାର ଯନ୍ତ୍ର ଧରି ସମୁଦ୍ରକୁ ଡେଇଁ-ପଡ଼ିଲେ । ସେମାନେ ସ୍ୱତନ୍ତ୍ର ପୋଷାକ ପିନ୍ଧିଥିବାରୁ ଖୁବ୍ ସହଜରେ ଭେଳା ନିକଟରେ ପହଞ୍ଚି ଷ୍ଟୀନ୍‌ଙ୍କୁ ଅଭୟବାଣୀ ଶୁଣାଇଲେ । ଦୀର୍ଘକାଳ ଝଡ଼ ଓ ସମୁଦ୍ରଢେଉର ଗର୍ଜନ ଶୁଣି ଶୁଣି ଷ୍ଟୀନ୍‌ଙ୍କ କାନ ବଧିର ହୋଇଯାଇଥିଲା । ଜାହାଜ ବୁଡ଼ିବାର ସତୁରି ଘଣ୍ଟା ପରେ ତାଙ୍କ କାନରେ ପ୍ରଥମ ଥର ପାଇଁ ବାଜିଲା ମନୁଷ୍ୟର କଣ୍ଠସ୍ୱର । ସେ ଆଶ୍ୱସ୍ତି ଲାଭ କରି ପଚାରିଲେ, "ଆଉ କାହାକୁ ପାଇଲ କି ?" ବୁଡ଼ାଳଙ୍କଠାରୁ 'ନା' ଶୁଣିବା-ପରେ ସେ ଆଖି ବୁଜି ଭେଳାଉପରେ ଆଉଜିପଡ଼ିଲେ । ରେଡ଼ିଓଦ୍ୱାରା ଉପରେ ଥିବା ବିମାନକୁ ଜଣାଇ ଦିଆଗଲା ଯେ ଷ୍ଟୀନ୍‌ଙ୍କ ଅବସ୍ଥା ଭଲ ଅଛି । ପ୍ରାୟ ଅଧ ଘଣ୍ଟାପରେ ଗୋଟିଏ ତୈଳବାହୀ ଜାହାଜ ବେତାର ବାର୍ତ୍ତା ପାଇ ସେଠାରେ ଆସି ପହଞ୍ଚିଲା । ଉଦ୍ଧାରକାରୀ ବନ୍ଧୁ-ମାନଙ୍କର ସମ୍ମିଳିତ ଚେଷ୍ଟାରେ ଷ୍ଟୀନ୍ ନିଶ୍ଚିତ ମୃତ୍ୟୁମୁଖରୁ ଏହିପରି ଉଦ୍ଧାର ପାଇଲେ । କିନ୍ତୁ ତିନି ଦିନ ତିନି ରାତି ନ ଖାଇ ନ ଶୋଇ, ତୋଫାନ ଓ ସମୁଦ୍ର ସଙ୍ଗେ ଲଢ଼ି ସେ ଯେଉଁ ଅସୀମ ଧୈର୍ଯ୍ୟ ଓ ମନୋବଳର ପରିଚୟ ଦେଇଥିଲେ, ତାହା ସାଧାରଣ ମନୁଷ୍ୟ-ମାନଙ୍କଠାରେ କ୍ୱଚିତ୍ ଦେଖିବାକୁ ମିଳେ ।



# ଧନ ବଡ଼ ନା ମନ ବଡ଼ ?

ଅନେକ ଦିନ ତଳର କଥା । ଗୋଟିଏ ଗାଁଠାରୁ କିଛି ଦୂରରେ ତିନୋଟି ଭାଇ କୁଡ଼ିଆ ମାରି ରହୁଥାନ୍ତି । ଭାରି ଗରିବ ସେମାନେ, ତେଣୁ ଭଲ ଘରଖଣ୍ଡେ ତୋଳିବାକୁ ତାଙ୍କ ହାତରେ ପଇସା ନ ଥାଏ । ଜମି ଥିଲେ ସିନା ଚାଷବାସ କରି ସୁଖରେ ରହନ୍ତେ; ତା'ବି ନ ଥାଏ । କେବଳ ତାଙ୍କ ବାଡ଼ରେ ଥାଏ ଗୋଟିଏ ନାସପାତି ଗଛ । ଗଛଟି ଫଳରେ ଲଦି ହୋଇଥାଏ । ତାକୁଇ ବିକି ସେମାନେ କଷ୍ଟେମଷ୍ଟେ ଚଳନ୍ତି । ତେଣୁ ତିନି ଭାଇଯାକ ପାଳି କରି ସେ ଗଛଟିକୁ ଦିନରାତି ଜଗିଥାନ୍ତି ।

ଦିନକର କଥା । ବଡ଼ ଭାଇ ସେଦିନ ଗଛ ଜଗିଥାଏ । ଜଣେ ଦାଢ଼ିଆ ବୁଢ଼ା କୁଆଡ଼ୁ ଆସି ସେଠି ପହଞ୍ଚିଲା । ଶୀତରେ ଥରୁଥାଏ ସେ । ପେଟ ତାର ଭୋକରେ ଲଗିଯାଇଥାଏ । ସେ ଆସି ବଡ଼ ଭାଇକୁ କହିଲା, "ମତେ ଦି'ଟା ନାସପାତି ଦିଅନ୍ତୁ । ଭାରି ଭୋକ ହେଉଛି । ଦିନଯାକ କିଛି ଖାଇନାହିଁ ।" ଏହା ଶୁଣି ବଡ଼ ଭାଇ କହିଲା, "ଦି'ଟା କାହିଁକି, ଯେତେ ପାରୁଛ ମନଇଚ୍ଛା ଖାଅ ।" ବୁଢ଼ା ତାକୁ ଧନ୍ୟବାଦ ଦେଇ ମନବୋଧ କରି ନାସପାତି ଖାଇଲା ଏବଂ ତା ବାଟରେ ଚାଲିଗଲା ।

ତା ପରେ ପରେ ଅନ୍ୟ ଦୁଇଭାଇଙ୍କ ଜଗିବା ପାଳି ପଡ଼ିଲା । ସେ ଦୁଇଦିନ ମଧ୍ୟ ସେ ବୁଢ଼ା ଠିକ୍ ସେହିପରି ଆସି ଖାଇବାକୁ ମାଗିଲା । ସେ ଦୁହେଁ ବି ତାକୁ ମନବୋଧ କରି ନାସପାତି ଖାଇବାକୁ ଦେଲେ ।

ଯେଉଁ ବୁଢ଼ାଟି ତାଙ୍କଠାରୁ ନାସପାତି ମାଗି ଖାଇଲା, ସେ ପ୍ରକୃତରେ ଏ ମର୍ତ୍ତ୍ୟର ମଣିଷ ନୁହେଁ । ସେ ସ୍ୱର୍ଗର ଜଣେ ଦେବଦୂତ । ସେ ଏ ତିନିଭାଇଙ୍କ ଦୁଃଖ ଦେଖି ତାଙ୍କୁ ସାହାଯ୍ୟ କରିବାକୁ ଆସିଥିଲା ଏବଂ ପରୀକ୍ଷା କରି ଦେଖୁଥିଲା ସେମାନେ କିଭଳି ଲୋକ । ସେ ଯେତେବେଳେ ଜାଣିଲା ଯେ ଗରିବ ହେଲେ ସୁଦ୍ଧା ସେମାନଙ୍କ ମନ ଖରାପ ନୁହେଁ, ସେ ସ୍ଥିର କଲା ସେମାନଙ୍କୁ ସାହାଯ୍ୟ କରିବ ।

ଚତୁର୍ଥ ଦିନ ସକାଳୁ ବୁଢ଼ା ସେ ତିନିଭାଇଙ୍କୁ କୁଡ଼ିଆରେ ଭେଟି କହିଲା, "ମୁଁ ତୁମ ଉପକାର ସୁଝିବାକୁ ଆସିଛି । ମୋ ସାଙ୍ଗରେ କିଛି ବାଟ ଆସ ।" ତିନିଭାଇଯାକ ଏ କଥା ଶୁଣି ଆଶ୍ଚର୍ଯ୍ୟ ହୋଇଗଲେ ।

କିଏ ଏ ବୁଢ଼ା ? ଆମକୁ କୁଆଡ଼େ ଡାକୁଛି ? କିନ୍ତୁ କିଛି ନ କହି ସେମାନେ ବୁଢ଼ା ପଛେ ପଛେ ଚାଲିଲେ ।

କିଛି ବାଟ ଯିବାପରେ ଗୋଟାଏ ନଈ ପଡ଼ିଲା । ବୁଢ଼ା ସେ ନଈକୁ ଚାହିଁ ପ୍ରଥମେ ବଡ଼ଭାଇକୁ ପଚାରିଲା, "ତୁମର କଣ ଦରକାର ମାଗ, ଦେବି ।" ବଡ଼ଭାଇ କହିଲା, "ଏ ନଈଗୋଟାକ ଯଦି ମଦ ହୋଇଯାନ୍ତା, ଆଉ ମୁଁ ତାର ମାଲିକ ହୁଅନ୍ତି, ବଢ଼ିଆ ହୁଅନ୍ତା ।" ତା ପାଟିରୁ କଥା ନ ସରୁଣୁ ବୁଢ଼ା ତା ବାଡ଼ି ଖଣ୍ଡିକ ନଈ ଉପରେ ବୁଲାଇ ଆଣିଲା । ଚାହିଁ ଚାହିଁ ନଈର ପାଣି ମଦ ପାଲଟିଗଲା । ଖାଲି ସେତିକି ନୁହେଁ, ଦେଖାଗଲା ଦଳ ଦଳ ଲୋକ ନଈରୁ ମଦ ନେଇ ବଡ଼ ବଡ଼ ପିପାରେ ଭର୍ତ୍ତି କରୁଛନ୍ତି । ଗାଡ଼ିରେ ମଦ ପିପାସବୁ ଲଦା ହେଉଛି । ଆଉ କେତେକ ଲୋକ ଖାତାପତ୍ର ଧରି ହିସାବ କିତାବ କରୁଛନ୍ତି ଏବଂ ପଇସା ଗଣି ରଖୁଛନ୍ତି । "ତୁମେ ବର୍ତ୍ତମାନଠାରୁ ଏ ସବୁର ମାଲିକ ହେଲ"—ବଡ଼ ଭାଇକୁ ଏହା କହି ବୁଢ଼ା ଅନ୍ୟ ଦୁଇ ଭାଇଙ୍କୁ ଧରି ଆଗେଇ ଚାଲିଲା ।

କିଛି ଦୂର ଆଗକୁ ଯାଇ ସେମାନେ ଏକ ବଡ଼ ପଡ଼ିଆରେ ପହଞ୍ଚିଲେ । ସେତିକି-ବେଳେ ଦଳେ ପକ୍ଷୀ ଉଡ଼ି ଆସି ସେ ପଡ଼ିଆରେ ବସିପଡ଼ିଲେ ।



ବୁଢ଼ା ସେଇଠାରେ ଅଟକିଯାଇ ମଝିଆଁ ଭାଇକୁ ପଚାରିଲା, "ତୁମେ କଣ ଚାହଁ ?" ସେ କହିଲା, "ଏ ପକ୍ଷୀଦଳକ ଗାଈ ହୋଇଯାନ୍ତେ ଏବଂ ମୁଁ ତାର ମାଲିକ ହୁଅନ୍ତି କି !" ପୂର୍ବପରି ବାଡ଼ି ବୁଲାଇଦେଇ ବୁଢ଼ା କହିଲା, "ବେଶ୍, ସେଇ କଥା ହେଲା । ତୁମେ ଏ ସବୁର ମାଲିକ ହୋଇ ଏଠାରେ ରହ ।" ମଝିଆଁ ଭାଇ ଦେଖିଲା ଶହ ଶହ ଗାଈଗୋରୁ ପଡ଼ିଆରେ ଚରୁଛନ୍ତି ଏବଂ ଗୋଟାଏ ପ୍ରକାଣ୍ଡ କୋଠାଘରେ ଦଳେ ଲୋକ ଦୁଧ, ଦହି, ଛେନା, ଲହୁଣୀ ପ୍ରସ୍ତୁତ ରଖାଥୁଆ କରୁଛନ୍ତି ।

ଆଉ କିଛି ବାଟ ଯାଇ ବୁଢ଼ା ସାନଭାଇକୁ ପଚାରିଲା ତାର କଣ ଇଚ୍ଛା । ସେ କହିଲା, "ମୋର ଗୋଟିଏ ଭାର୍ଯ୍ୟା ଦରକାର, ଯାହାର ସ୍ୱଭାବ ଭଲ ହୋଇଥିବ ଏବଂ ସେ ଦୁଃଖୀର ଦୁଃଖ ବୁଝିପାରୁଥିବ ।"

"ତେବେ ମୋ ସଙ୍ଗେ ଆସ," ଏହା କହି ସେ ବୁଢ଼ା ସାନଭାଇକୁ ନେଇ ଅନେକ ଦୂର ଚାଲିଗଲା । ଗୋଟାଏ ରାଜନଅର ଭିତରେ ପଶି ଦୁହେଁ ପହଞ୍ଚିଲେ ସିଧା ରାଜାଙ୍କ ପାଖରେ । ତାଙ୍କର ଏକମାତ୍ର ସୁନ୍ଦରୀ ଝିଅକୁ ମଝିରେ ବସାଇ ରାଜା ଓ ରାଣୀ ଦୁଇ ପାଖରେ ବସିଥାନ୍ତି । ଏ ଦୁଇଜଣଙ୍କୁ ହଠାତ୍ ସେଠାରେ ଦେଖି ରାଜା ପଚାରିଲେ, "କିଏ ତୁମେ ?"

ବୁଢ଼ା କହିଲା, "ମୋ ସାଥିରେ ଥିବା ଏହି ଯୁବକ ଆପଣଙ୍କ କନ୍ୟାକୁ ବିବାହ ହେବାକୁ ଚାହାଁନ୍ତି ।" ରାଜା ଏ କଥା ଶୁଣି ଏକବାର ଅବାକ୍ ହୋଇଗଲେ । ଭାବିଲେ ନିଶ୍ଚୟ ପାଗଳ ଲୋକଟାଏ ନଅରକୁ ପଶି ଆସିଛି । ଦରୁଆନକୁ ଡାକଟାଏ ମାରି ବୁଢ଼ାକୁ କହିଲେ, "ଦୁଇଜଣ ରାଜପୁତ୍ରଙ୍କ ସଙ୍ଗେ ମୋ ଝିଅର ବିବାହ ପ୍ରସ୍ତାବ ପଡ଼ିଛି । ତୁମେ ପାଗଳ ନ ହୋଇଥିଲେ ଏ ଭିକାରୀସଙ୍ଗେ ତାର ବିବାହ କଥା ପକାନ୍ତ ନାହିଁ । ବାହାରିଯାଅ ମୋ ଆଗରୁ ।"

ବୁଢ଼ା ଡରି ନ ଯାଇ କହିଲା, "ଶୁଣନ୍ତୁ ରାଜା, ଟିକିଏ ଥୟ ଧରି ଶୁଣନ୍ତୁ । ଏ ପୃଥିବୀରେ ଈଶ୍ୱରଙ୍କ ଇଚ୍ଛାରେ ସବୁ ଘଟୁଛି । ଆପଣ ଏହା ମାନନ୍ତି ନା ନାହିଁ ?"

ରାଜା ଥଟ୍ଟା କରି କହିଲେ, "କିନ୍ତୁ ତମଭଳି ଈଶ୍ୱରଙ୍କୁ ମୁଁ ମାନିବାକୁ ପ୍ରସ୍ତୁତ ନୁହେଁ ।" ବୁଢ଼ା ଆହୁରି ଧୀରସ୍ୱରରେ କହିଲା, "ମତେ ମାନିବାକୁ ମୁଁ କହୁନାହିଁ । ମୋ ପ୍ରସ୍ତାବ ଟିକିଏ ଅନୁଗ୍ରହ କରି ଶୁଣନ୍ତୁ । ରାଜକନ୍ୟା ନିଜ ହାତରେ ତିନୋଟି ଅଫଳନ୍ତ ଦ୍ରାକ୍ଷାଡାଳ



ତିନି ବରପାତ୍ରଙ୍କ ନାମରେ ଆଜି ପୋତିଦିଅନ୍ତୁ । କାଲି ସକାଳକୁ ଯାହା ଗଛରେ ଅଙ୍ଗୁର ଫଳିଥିବ, ସେ ତାଙ୍କୁ ବିଭା ହେବେ । ଈଶ୍ୱରଙ୍କର କଣ ଇଚ୍ଛା ବଲେ ଜଣା ପଡ଼ିଯିବ ।"

ରାତିକ ଭିତରେ ଅଙ୍ଗୁର ଫଳିବା ଅସମ୍ଭବ । ତେଣୁ କୌଣସି ଭୟ ନ କରି ରାଜା ବୁଢ଼ା କଥାରେ ରାଜି ହୋଇଗଲେ । ଦ୍ରାକ୍ଷାଡାଳ ଅଣାଗଲା । ରାଜକନ୍ୟା ନିଜ ହାତରେ ସେଗୁଡ଼ିକ ଚିହ୍ନ ଦେଇ ଅଲଗା ଅଲଗା ପୋତିଲେ । କିନ୍ତୁ ସକାଳକୁ ଏ କଣ ହେଲା ! ସମସ୍ତେ ଦେଖିଲେ କେବଳ ଗୋଟିଏ ଡାଳ ଅଙ୍ଗୁର ପେନ୍ଥାରେ ନଇଁ ପଡ଼ିଛି ଏବଂ ସେଇ ଡାଳଟି ଦରିଦ୍ର ଯୁବକର !

ରାଜାଙ୍କର ଦମ୍ଭ ଭାଙ୍ଗିଗଲା । ସେ କହିଲେ, "ହଁ, ଈଶ୍ୱରଙ୍କ ଇଚ୍ଛା ସଫା ଜଣାପଡ଼ିଲା ।" ଯେ ବିଶ୍ୱବ୍ରହ୍ମାଣ୍ଡର ରାଜା, ତାଙ୍କ କଥା ଅମାନ୍ୟ କରିବାକୁ ସେ ବା କିପରି ସାହସ କରନ୍ତେ ? ତେଣୁ ସେହିଦିନ ସେ ଯୁବକ ସଙ୍ଗେ ରାଜକନ୍ୟାର ବିବାହ ହୋଇଗଲା । କିନ୍ତୁ ଲଜ୍ଜା, ଦୁଃଖ ଓ ଅପମାନରେ ରାଜା ମୁଣ୍ଡ ଟେକି ପାରିଲେ ନାହିଁ । ଉଆସ ଭିତରୁ ବରକନ୍ୟାଙ୍କୁ ବାହାର କରିଦେଲେ । ସେ ଦୁହେଁ ନିଜ କର୍ମ ଆଦରି ତାଙ୍କ କୁଡ଼ିଆ ଘରକୁ ଚାଲିଗଲେ । କିନ୍ତୁ ସେ ବୁଢ଼ା କୁଆଡ଼େ ଗଲା, ତାର ଦେଖା ମିଳିଲା ନାହିଁ ।

ବର୍ଷେକପରେ ପୁଣି ସେ ଦେବଦୂତ ପୃଥିବୀକୁ ଆସିଲେ । ଗୋଟିଏ ବୁଢ଼ା ଭିକାରୀ ବେଶରେ ସେ ବଡ଼ଭାଇପାଖକୁ ପ୍ରଥମେ ଗଲେ । ସେ ଯେଉଁ ଧନସମ୍ପତ୍ତି ପାଇଛି ତାକୁ କପରି ବ୍ୟବହାର କରୁଛି ଦେଖିବେ । ଏଥି ମଧ୍ୟରେ ବଡ଼ ଭାଇ ଜଣେ ଧନୀ ମଦବ୍ୟବସାୟୀ ହୋଇ-ଯାଇଥାଏ । ଦେବଦୂତ ତାକୁ ଗିଲାସେ ମଦ ପିଇବାକୁ ମାଗିଲେ । ସେ ତ ତାଙ୍କୁ ଚାହିଁ ପାରିଲା ନାହିଁ, ଓଲଟି କହିଲା, "ଏମିତ ବାଣ୍ଟିବସିଲେ ମୋର ନଈକ ମଦ ଶେଷ ହୋଇଯିବ ।" ଏହା କହିବାମାତ୍ରେ ତା ନଈଯାକର ମଦ ପୂର୍ବପରି ପାଣି ପାଲଟିଗଲା ।

ଦେବଦୂତ ତାପରେ ଗଲେ ମଝିଆଁ ଭାଇ ଘରକୁ । ସେ ଗଦି ଉପରେ ଆରାମରେ ବସି ତା ଲୋକମାନଙ୍କୁ ହଣ୍ଡାଭିତରେ ଛେନା ଭର୍ତ୍ତି କରିବାକୁ ହୁକୁମ ଦେଉଥାଏ । ଦେବଦୂତ ଖଣ୍ଡେ ଛେନା ଖାଇବାକୁ ମାଗିବାରୁ ସେ କହିଲା, "ବୁଢ଼ା, ଏଠି ଛେନା ବିକ୍ରି ହୁଏ, ମାଗଣା ମିଳେ ନାହିଁ । ଯା, କାମ କରି ଖାଇବୁ ।" ତା କଥା ନ ସରୁଣୁ ସବୁ ଗୋରୁଗାଈ ଓ ଧନଦରବ କୁଆଡ଼େ ଉଭେଇଗଲା । ସେ ପଡ଼ିଆ ଉପରେ ବସିଥିଲେ କେବଳ ଦଳେ ପକ୍ଷୀ ।

ସବାଶେଷରେ ଦେବଦୂତ ସାନଭାଇ କୁଡ଼ିଆରେ ପହଞ୍ଚିଲେ ଏବଂ ରାତିଏ ସେଠାରେ ରହିବା ପାଇଁ ଆଶ୍ରୟ ମାଗିଲେ । ସାନଭାଇ ଓ ତା ସ୍ତ୍ରୀ ଅତି ଆଦରରେ ତାଙ୍କୁ ଘରକୁ ଡାକନେଇ କହିଲେ, "ଆସନ୍ତୁ, ଆମର ଆଜ ବଡ଼ ଭାଗ୍ୟ ଯେ ଆପଣଙ୍କୁ ଅତିଥିରୂପେ ପାଇଛୁ । କିନ୍ତୁ ଏ ଗରିବ ଘରେ କଣ ଅଛି ଯେ ଆପଣଙ୍କୁ ଖାଇବାକୁ ଦେବୁ ? ସେତିକ ଆମର ଦୁଃଖ ।" ଭିକାରୀ ବେଶଧାରୀ ଦେବଦୂତ କହିଲେ, "ତୁମେ ଯାହା ଖାଇବ, ମୁଁ ସେଇଆ ଖାଇ ସନ୍ତୁଷ୍ଟ ହେବ ।"

ତାପରେ ରାଜକନ୍ୟା କିଛି ମାଣ୍ଡିଆଚୂନାର ରୁଟି ତିଆରି କରି ଦେବଦୂତଙ୍କ ପାଖରେ ଥୋଇଲା । ସେ ଆଉ ଖଣ୍ଡେ ରୁଟି ଆଣି ତା ସ୍ୱାମୀଙ୍କ ପାଖରେ ବାଢ଼ିଦେବାକୁ ଯାଉଛି, ଦେଖିଲା ଏକ ଅଦ୍ଭୁତ ଦୃଶ୍ୟ । କଳା ରୁଟିଗୁଡ଼ାକ ସଫା ମଇଦାରୁଟି ପାଲଟି ଯାଇଛି ଏବଂ ତା ପାଖରେ ନାନାପ୍ରକାର ସୁମିଷ୍ଟ ଖାଦ୍ୟ ସଜା ହୋଇ ରହିଛି । ଆଶ୍ଚର୍ଯ୍ୟ ହୋଇ ସେ ଉପରକୁ ଚାହିଁ ଦେଖେ, ଏକ ସୁନ୍ଦର ରଜାଉଆସପରି ଘର ଭିତରେ ସେ ବସିଛି । ଧନଦ୍ରବ୍ୟରେ ସେ ଘର ପୂର୍ଣ୍ଣ । ମାତ୍ର ସେ ବୃଦ୍ଧ ଭିକାରୀ ସେଠି ନାହାନ୍ତି । ସେ କେତେବେଳେ ଯେ ଅଦୃଶ୍ୟ ହୋଇଯାଇଛନ୍ତି ତାଙ୍କୁ ଜଣାନାହିଁ । □

## ଏ ବହିରେ ଅଛି :




**ଶିଶୁସାଥୀ ପୁସ୍ତକମାଳା—୬**

**ମରଣ ଦୋଳି**

ଲେଖକ : ରାମକୃଷ୍ଣ ନନ୍ଦ
ପୁନର୍ମୁଦ୍ରଣ : ୧୯୯୧

ପ୍ରକାଶକ : ଶୁଭକାନ୍ତ ନନ୍ଦ
ସୌଦାମିନୀ ପ୍ରକାଶନ
ସଂସାର ପ୍ରେସ୍ କଟକ-୯

ମୁଦ୍ରକ : ସଂସାର ପ୍ରେସ୍,
ତେଲେଙ୍ଗା ବଜାର, କଟକ

**ମୂଲ୍ୟ ପାଞ୍ଚ ଟଙ୍କା**